# କଳା ପୃଥିବୀର କଥା


ବଟକୃଷ୍ଣ ତ୍ରିପାଠୀ

ଆଇ. ପି. ଏସ୍.





ଓଡ଼ିଶା ବୁକ୍ ଷ୍ଟୋର

# କଳା ପୃଥିବୀର କଥା

(ଗଳ୍ପ ସଙ୍କଳନ)

ଗାଳ୍ପିକ :
ବଟକୃଷ୍ଣ ତ୍ରିପାଠୀ (ଆଇ.ପି.ଏସ୍.)

ପ୍ରକାଶକ :
ବିଜୟଶଙ୍କର ପାତ୍ର
ଓଡ଼ିଶା ବୁକ ଷ୍ଟୋର
ବିନୋଦବିହାରୀ, କଟକ-୭୫୩ ୦୦୨

ପ୍ରଚ୍ଛଦ :
ଶଶିକାନ୍ତ ରାଉତ

ପ୍ରଥମ ପ୍ରକାଶ : ୧୯୯୩

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
କଟକ-୭୫୩୦୦୧

ମୂଲ୍ୟ :
ଶୋଭନ—**ପଚିଶ ଟଙ୍କା**
ସାଧାରଣ—କୋଡ଼ିଏ ଟଙ୍କା

**KALA PRUTHIBI RA KATHA**

(A Collection of Short stories)

by :
Batakrushna Tripathy
I. P. S.

Published by :
Bijoysankar Patra
Orissa Book Store
Binodbehari, Cuttack-753 002

1st Edition : 1993

Price : **Rs 25/-**

## ଲେଖକୀୟ... ...

'କଳ୍ପନା ପୃଥିବୀର କଥା'ରେ ସଂକଳିତ ଅଧିକାଂଶ ଗଳ୍ପ ସହ ମୋର ବ୍ୟକ୍ତିଗତ ଅନୁଭୂତି ଜଡ଼ିତ । ଜଣେ ପୋଲିସ୍ ଅଫିସର୍ ଭାବେ ଘଟଣା ଚକ୍ରରେ ମୁଁ ଏହି କାହାଣୀ ଓ ଚରିତ୍ର ମାନଙ୍କ ସହ ସଂପୃକ୍ତ । ତେଣୁ ଅଧିକାଂଶ କଥା-ଭାଗ ସତ୍ୟ ଓ ଚରିତ୍ରମାନେ କାର୍ଯ୍ୟକଳାପ ଦୃଷ୍ଟିରୁ ସତ୍ୟ ହେଲେ ବି ନାଟକୀୟତା ଦୃଷ୍ଟିରୁ କେତେକ ସ୍ଥାନରେ ମୋର କଳ୍ପନା ପ୍ରସୂତ । ଏହାରି କରିବା ମଧ୍ୟ ମୋର ଇଚ୍ଛାକୃତ । ଏତକ କରିବା ସହିତ ଘଟଣା ଗୁଡ଼ିକର କଳାତ୍ମକ ଅବତାରଣା ମଧ୍ୟ ଏଥିରେ ମୁଁ କରିଛି; କାରଣ ତା' ହୋଇ ନଥିଲେ ଏହା କେବଳ 'ପୋଲିସ୍ ଫାଇଲ୍' ନଚେତ୍ ମୋର ବ୍ୟକ୍ତିଗତ ଦିନଲିପି ହୋଇ ରହିଥା'ନ୍ତା । ରହସ୍ୟ, ରୋମାଞ୍ଚ ଅଥବା ମଣିଷଙ୍କୁ ଆତଙ୍କ ପ୍ରପୀଡ଼ିତ କରିବା ପାଇଁ ଯେଉଁ ସବୁ ଚରିତ୍ରମାନେ ଘଟଣା ଚକ୍ରରେ ଗଳ୍ପସହ ଜଡ଼ିତ ସେମାନେ ପରବର୍ତ୍ତୀ ଜୀବନରେ ଉତ୍ତମ ମଣିଷ ହୁଅନ୍ତୁ, ସତ୍ୟର ଜୟ ହେବାକାଳରେ ହେଉ, ବଳିଷ୍ଠ ବ୍ୟକ୍ତିତ୍ୱ ଆତ୍ମପ୍ରକାଶ କରୁ ଏବଂ ଅସତ୍ୟ-ଅସଦା-ଚାରକୁ ପ୍ରବର୍ତ୍ତାଉଥିବା ମଣିଷଙ୍କର ପରାଜୟ ଅନିବାର୍ଯ୍ୟର ଉଦ୍‌ଘୋଷଣା ମୁଁ କରିଛି ଗଳ୍ପଗୁଡ଼ିକର ଅଭିମୁଖ୍ୟ ଓ ପରିଣତି ରୂପେ । ଏହି ଗଳ୍ପ-ଗୁଡ଼ିକ ଯଦି ପାଠକଙ୍କୁ ଆନନ୍ଦ ଦେବ ଓ ସାଂପ୍ରତିକ ଗଳ୍ପ ସାହିତ୍ୟକୁ ସମୃଦ୍ଧ କରିବ ତେବେ ମୁଁ ଗୌରବାନ୍ୱିତ ହେବ ।

ଗଳ୍ପ ସଂକଳନଟିର ନାମକରଣ କରିଛନ୍ତି ଚଳନ୍ତି ପୀଢ଼ୀର ଗାଳ୍ପିକା ଶ୍ରୀମତୀ ଜୟନ୍ତୀ ରଥ । ପୁସ୍ତକଟିର ପ୍ରକାଶନକାଳରେ ସେ ମୋର ଧନ୍ୟବାଦାର୍ହ । ଗଳ୍ପ ସଂକଳନଟି ପାଠକର ଏକ ବିଶ୍ଳେଷଣାତ୍ମକ

ଭୂମିକା ଲେଖିଛନ୍ତି ମୋର ଅନୁଜ ପ୍ରତିମ ଆଲୋଚକ ତଥା ଗବେଷକ ଅଧ୍ୟାପକ ଡକ୍ଟର ନୃସିଂହ ଷଡ଼ଙ୍ଗୀ । ତାଙ୍କୁ ମୋର ଧନ୍ୟବାଦ । ପୁସ୍ତକଟି ଯଥାସମ୍ଭବ ତ୍ରୁଟିମୁକ୍ତ ଓ ପ୍ରକାଶ କରିବା ଦିଗରେ ଉଦ୍ବିଗ୍ନ ହୋଇଥିବାରୁ ଗୁରୁପ୍ରସନ୍ନ ପ୍ରେସ୍‌ର ସ୍ୱତ୍ତ୍ୱାଧିକାରୀ ତଥା ବିଶିଷ୍ଟ ଔପନ୍ୟାସିକ ପ୍ରସନ୍ନ କୁମାର ମହାପାତ୍ରଙ୍କ ଭୂମିକା ଅବିସ୍ମରଣୀୟ । ଶେଷରେ ଏହି ଗଳ୍ପସଂକଳନଟିର ପ୍ରକାଶନ ଦାୟିତ୍ୱ ବହନକରି ସ୍ୱଳ୍ପସମୟ ମଧ୍ୟରେ ଏହାର ପ୍ରକାଶନ ସମ୍ଭବ କରିଥିବାରୁ ପ୍ରକାଶକ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ଓ ଶ୍ରୀମାନ୍ ବିଜୟ ଶଙ୍କର ପାତ୍ରଙ୍କୁ ଏହି ଅବସରରେ ସ୍ମରଣକରୁଛି । ଏ ସମସ୍ତ ଗଳ୍ପ ଗୁଡ଼ିକ ଓଡ଼ିଶାର ଲବ୍ଧ-ପ୍ରତିଷ୍ଠ ପତ୍ର-ପତ୍ରିକାରେ ମଧ୍ୟ ପୂର୍ବରୁ ପ୍ରକାଶିତ ହୋଇଥିଲା । ସେହି ସବୁ ପତ୍ର-ପତ୍ରିକାର ସଂପାଦକ ମାନଙ୍କଠାରେ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ଆଶା ଓ ବିଶ୍ୱାସ "କଳା ପୃଥିବୀର କଥା" ସାମାଜିକ ସଚେତନତା ବୃଦ୍ଧିରେ ଓ ଅପରାଧ ପ୍ରବଣତା ହ୍ରାସଦିଗରେ ଯଥାଯୋଗ୍ୟ ଭୂମିକା ଗ୍ରହଣ କରିବ ।

**ବୈକୁଣ୍ଠ ତ୍ରିପାଠୀ**

ତା ୨୩ । ୮ । ୯୩





ସାଂସାରିକ ଦାୟିତ୍ୱବୋଧ ଓ ଜଞ୍ଜାଳ ଘେରରେ

ମହମବତୀ ପରି ନିଃଶବ୍ଦ ନିଃଶେଷ ହୋଇ ଯାଉ ଯାଉ

ମତେ ଆଲୋକିତ କରିବାରେ

ଯାହାଙ୍କର ଆନନ୍ଦ ଅଶେଷ,

ସେଇ ପ୍ରେରଣାର ଆଲୋକଉତ୍ସ

**ଶ୍ରୀମତୀ ନୀରଦପ୍ରଭାଙ୍କୁ...**

# କଳାପୃଥିବୀ ପାଇଁ ତର୍ଯ୍ୟକ୍ ଦୃଷ୍ଟି

ଗଳ୍ପ କହିବା ଓ ଶୁଣିବା ମଣିଷର ଏକ ଚିରନ୍ତନ ଲାଳସା । ମଣିଷର ଏ ଲାଳସା ତାର ସଭ୍ୟତା ବିକାଶର ଆଦିକାଳରୁ ଉନ୍ମେଷିତ । ଜୀବନ ଓ ମୃତ୍ୟୁର ସମଯୁରୀମା ସହ ମଣିଷର ଯେଉଁ ଜୀବନ ଓ ଜଗତ ସଂପୃକ୍ତ ତାହାହିଁ ହୁଏ ତା' କହିବା ଓ ଶୁଣିବାର କଥା-କାହାଣୀ । ପ୍ରତ୍ୟେକ ମଣିଷର ଜୀବନରେ କିଛି ନା କିଛି ବିଶେଷ କଥନିକା ଅଛି ଯାହାକୁ ଗଳ୍ପର ମାନ୍ୟତା ଦେବାର ଲୋଭ କଥାକାର ସମ୍ଭାଳି ପାରେ ନାହିଁ । ଫଳରେ ଚିନ୍ତା ଚେତନାର ଅଦୃଶ୍ୟ ପର୍ଦ୍ଦା ଅନ୍ତରାଳରୁ ଦୃଶ୍ୟ ହୁଏ ଲାଲ୍ ଟୁକ୍ ଟୁକ୍ କୁନି ସୂର୍ଯ୍ୟଟିଏ ପରି ଗପଟିଏ···କଥାଟିଏ ।

ସାରଳାଙ୍କ ମହାଭାରତ ଠାରୁ ଆଧୁନିକ କଥା ସାହିତ୍ୟଯାଏଁ ଯଦି ଅନୁଶୀଳନ କରାଯାଏ ତେବେ ପାଠକୀୟତା ଅଧିକ ପରିଲକ୍ଷିତ ହୁଏ କଥାଭାଗ ପ୍ରତି । କଥାରେ ସ୍ଥାନ ପାଏ ନିର୍ଦ୍ଦିଷ୍ଟ ବିଶେଷ ଘଟଣା-ବାହୀ ଏକ କାଳ ଓ କେତେକ ଚରିତ୍ର ଯେଉଁମାନେ ସେହିକାଳ ସହ ସଂପୃକ୍ତ । କଥାଭାଗ ବା ଆଖ୍ୟାୟିକା, କାଳ ଓ ଚରିତ୍ର ଏହି ତିନିଭାଗ ଗୋଟିଏ ଗୋଟିଏ ଗଳ୍ପର ମୁଖ୍ୟ କଥା ହୋଇଥା'ନ୍ତି । ସାରଳା ପୁରାଣ ଲେଖିଛନ୍ତି; ମାତ୍ର ତା'ଭିତରେ ଯେଉଁ କଥାଭାଗ ରହିଯାଇଛି ତହିଁରେ ବେଶ୍ ପ୍ରଭାବିତ ହୋଇଛି ଆମର ପରବର୍ତ୍ତୀ କଥାସାହିତ୍ୟ । ତେଣୁ ସାରଳା ସାହିତ୍ୟ କଥା-କାହାଣୀ ଓ ଚରିତ୍ରର ଗୁରୁଚରିତ୍ରଶାଳା ଭାବେ ଅଭିହିତ । ହୁଏତ କାହାଣୀ ରଚନାର ଏହାହିଁ ପୃଷ୍ଠଭୂମି ।

ଆଧୁନିକ କଥାସାହିତ୍ୟ ସେହି ପୃଷ୍ଠଭୂମିକୁ ନେଇ ଅଙ୍କୁରିତ ଓ ବିକଶିତ । କଥାକାର ଫକୀର ମୋହନଙ୍କ କଥା-ପ୍ରତିଭାରେ ଏହି କଥନିକା ହିଁ ହୋଇଛି ଆକର୍ଷଣୀୟ । ତାଙ୍କ ଯୁଗଜୟୀ ପ୍ରତିଭାର ସକଳ ମାନ୍ୟତା ଏଇଥିରେ ହିଁ ନିହିତ । ତାଙ୍କ ପରବର୍ତ୍ତୀକାଳ, ବିଶେଷକରି

ପ୍ରାକ୍ ସ୍ୱାଧୀନତା କାଳଯାଏଁ ଆମର କଥାସାହିତ୍ୟରେ ସମାଜର ବିବର୍ତ୍ତନ ଓ ମାନବ ସଭ୍ୟତାର କାଳୋଚିତ ମାନସ ପ୍ରତିବିମ୍ବିତ । ତେଣୁ ଗଳ୍ପର ଧାରାରେ ମାନବ ଜୀବନର ଅନେକ ବିଶେଷ ଘଟଣା ଓ ବିଶିଷ୍ଟ ଚରିତ୍ର ସମ୍ପୃକ୍ତ ହୋଇ ପଡ଼ିଥା'ନ୍ତି—ଏହା ସବୁକାଳର ଏକ ଅନିବାର୍ଯ୍ୟ ଗଳ୍ପ-ପରିଣତି ।

ସ୍ୱାଧୀନୋତ୍ତର କାଳ ମାନବ ଜୀବନ ପାଇଁ ହୋଇଛି ସମସ୍ୟା-ଶଙ୍କୁଳ ଓ ସଙ୍କଟ-ପୀଡ଼ିତ । ଏତେବେଳେ ଦେଶୀୟ ବହୁମୁଖୀ ସମସ୍ୟା ଓ ଚରିତ୍ରମାନଙ୍କର ଚିନ୍ତନଗତ ମାନସିକତା ଅଧିକ ହୋଇ ଗଳ୍ପର କାୟା ମଣ୍ଡନ କରିଛି । ସ୍ୱାଧୀନୋତ୍ତର କାଳର ବହୁମୁଖୀ ସମସ୍ୟା, ସଙ୍କଟ, ସଂଘର୍ଷ ମାନବ ଜୀବନକୁ ଯେପରି ଉଦ୍‌ବେଳିତ କରିଛି, ତାହା କଥାକାରର ମନୋଭୂମିକୁ ବେଶ୍ ପ୍ରଭାବିତ କରିଥିବାର ଲକ୍ଷ୍ୟ କରାଯାଏ । ଗଳ୍ପର ପରିଣତି ସବୁ କାଳରେ କିଛି କିଛି ଆଦର୍ଶକୁ ପ୍ରତିଷ୍ଠିତ କରିବା ପାଇଁ ଉଦ୍ଦିଷ୍ଟ । ସ୍ୱାଧୀନୋତ୍ତର କାଳରେ ଏହି ପ୍ରବଣତା ଅଧିକ । ମାତ୍ର ବିଂଶ ଶତକର ସପ୍ତମ ଦଶକ ପରଠାରୁ ଗଳ୍ପ ଜଗତର ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନ ଘଟିଛି । ମଣିଷ ନିଜ ଜୀବନର ସ୍ଥିତାବସ୍ଥା ପ୍ରତି ଅଧିକ ସନ୍ଦେହାତୁର ହେବାଦ୍ୱାରା ଏହା ଘଟିଛି । ରାଜନୀତି ସ୍ତରରେ ଓ କ୍ଷମତାର ସିଂହାସନରେ ଯେଉଁ ନ୍ୟାୟ-ଅନ୍ୟାୟର ଦ୍ୱନ୍ଦ୍ୱ ଦେଖାଦେଇଛି, ସମକାଳରେ ତାହା ସ୍ରଷ୍ଟାମାନଙ୍କୁ ବ୍ୟବସ୍ଥିତ କରିବା ପରିବର୍ତ୍ତେ ଯାଦୃଚ୍ଛିକ କରିଦେଇଛି । ରାଜନୀତିକ ପଶାପାଲି ସହ ପ୍ରତ୍ୟେକ ମଣିଷର ଜୀବନସୂତ୍ର ଯେପରି ଗ୍ରଥିତ ହୋଇପଡ଼ିଛି । ମଣିଷ ହୋଇଛି ସୁବିଧାବାଦର ଦାସ । ବ୍ୟକ୍ତିତ୍ୱ ଅପେକ୍ଷା ଅର୍ଥ ପ୍ରପୀଡ଼ିତ ମାନବାତ୍ମାର ସନ୍ଧାନ ଏତେବେଳେ ଉତ୍କଟ ଓ ଉଗ୍ର । ସଭ୍ୟତାର ବାହ୍ୟ ଚାକଚକ୍ୟରେ ସମାଜ ଜୀବନ ସମକାଳରେ ବେଶ୍ ଉତ୍ପୀଡ଼ିତ । ତେଣୁ ସାଂପ୍ରତିକ କଥା ସାହିତ୍ୟ ମନସ୍ତତ୍ତ୍ୱର କଥା କହେ, ଯାହା ସତ୍ୟତାକୁ ଅଧିକ କରି ଆପଣେଇ ନେଇ ସିଦ୍ଧାନ୍ତରେ ସମାଜ-ସଭ୍ୟତାର ଅବସ୍ଥାକୁ ଇଙ୍ଗିତ କରିବା ସହ ଆଦର୍ଶ ସମାଜ ପାଇଁ, ବଳିଷ୍ଠ ବ୍ୟକ୍ତିତ୍ୱ ପାଇଁ ବାର୍ତ୍ତା ଦିଏ ।

ସାଂପ୍ରତିକ କଥା ସାହିତ୍ୟର ଏଇ ବୀଜ-ଭୂମିରୁ ମଥା ଟେକୁଛି 'କଳା ପୃଥିବୀର କଥା' । ସ୍ରଷ୍ଟା—ବଟକୃଷ୍ଣ ତ୍ରିପାଠୀ । ସମଗ୍ର ଗଳ୍ପ-ଗୁଚ୍ଛରେ ପୃଥିବୀର ସକଳ କଳା-ଦିଗ ପ୍ରତିବିମ୍ବିତ । ଭ୍ରଷ୍ଟାଚାର, ପାପାଚାର ଲାଂଛିତ ଏଇ ପୃଥିବୀର ମଣିଷଙ୍କ ଆଲୋକିତ ସ୍ୱରୂପ ଅନ୍ତରାଳରେ ଆଉ ଏକ ଭୀଷଣ କୁତ୍ସିତ ରୂପ ଅଛି ଓ ତାହା ସମୟର ତାଡ଼ନାରେ ଆପେ ଆପେ ପ୍ରକଟିତ ହୁଏ—ଏଇ ମାନସିକତା ଅଧିକ ହୋଇ 'କଳା ପୃଥିବୀର କଥା' ଗଳ୍ପମାନଙ୍କରେ ଭାସ୍ୱର । ସମାଜ ନଷ୍ଟ ହେବା ମୂଳରେ, ମୂଲ୍ୟବୋଧ ବିଡ଼ମ୍ବିତ ହେବା ଦିଗରେ ମଣିଷର ତ ଅବଦାନ ଅଶେଷ । ଯେଉଁମାନେ କ୍ଷମତାସୀନ, ଯେଉଁମାନେ କ୍ଷମତାଚ୍ୟୁତ ଅଥବା ଯେଉଁମାନେ ସାଧାରଣ ସ୍ତରର ମଣିଷ ସେମାନେ ଘଟଣାଚକ୍ରରେ ଏପରି କେତେକ କାଣ୍ଡ କରିବସନ୍ତି, ଯେଉଁଥିରେ ସମାଜ ହୁଏ କଳଙ୍କିତ, ପରମ୍ପରା ହୁଏ ବିଡ଼ମ୍ବିତ । ମୂଲ୍ୟବୋଧ ଅପେକ୍ଷା ଏତେବେଳେ ମଣିଷ ଅଧିକ ମୂଲ୍ୟ-ବିଶ୍ୱାସୀ ହୋଇପଡ଼େ । ଲକ୍ଷ୍ୟ କରିବାର କଥା—ସମାଜର ଏଇ କଳାଦିଗର ରହସ୍ୟ ଉନ୍ମୋଚନ ପ୍ରତି କଥାକାର ବଟକୃଷ୍ଣ ତ୍ରିପାଠୀଙ୍କ ସ୍ରଷ୍ଟା ମାନସ ଅଧିକ ଉଛକିତ, ଅଧିକ ବିଶ୍ୱସ୍ତ ହୋଇପଡ଼ୁଛି ।

'କଳା ପୃଥିବୀର କଥା' ସଂଭ୍ରାନ୍ତ ମଣିଷଙ୍କ ଅପେକ୍ଷା ସଂଭ୍ରାନ୍ତ ସମାଜଚ୍ୟୁତ ଏପରି କେତେକ ମଣିଷଙ୍କ କାହାଣୀକୁ ନେଇ ରଘିମନ୍ତ; ଯାହାକୁକ କେବଳ କଳ୍ପିତ ବୋଲି କହିବା ସମୀଚୀନ ହୁଏନାହିଁ । ଘଟଣା ଓ ଚରିତ୍ରଗୁଡ଼ିକ ଆଜିର ନିତିଦିନିଆ ସମାଜରେ ସଂଘଟିତ ଘଟଣା ବା ତାଦୃଶ ଚରିତ୍ରଠାରୁ ବ୍ୟତିକ୍ରମ ନୁହନ୍ତି । ସମାଜ ଜୀବନର ଶାଣିତ ସତ୍ୟପାଠରେ ହାରଯାଇଥିବା ମଣିଷ କିପରି ଚୋରି, ଲୁଣ୍ଠନ, ହତ୍ୟା, ଧର୍ଷଣ ତଥା ନାନା ପୈଶାଚିକ କାର୍ଯ୍ୟରେ ଘଟଣାଚକ୍ରରେ ସଂପୃକ୍ତ ହୋଇପଡ଼େ ତାହାକୁ ଅତ୍ୟନ୍ତ ସମ୍ବେଦନଶୀଳତାର ଓ ତାର୍କିକ ଦୃଷ୍ଟିଭଙ୍ଗୀ ଦେଇ ଗାଳ୍ପିକ ପ୍ରକଟିତ କରିଛନ୍ତି । ଏକଦା ମାର୍କିନ୍ ସାହିତ୍ୟିକ **Mark Twain** କହିଥିଲେ—

"Every man is a moon
and has a dark side
which he never shows to any body."

ମଣିଷର ଚିରନ୍ତନ ପ୍ରବୃତ୍ତି ମଧ୍ୟରେ ଏହା ହେଉଛି ଏକ ପ୍ରବୃତ୍ତି ଯେ, ମଣିଷ ଆପଣା ଜୀବନର ସଫଳତାକୁ ଯେପରି ମୁକ୍ତ କଣ୍ଠରେ ଘୋଷଣା କରେ, ବିଫଳତାକୁ ସେହିପରି ଇଚ୍ଛାକୃତ ଭାବେ ଗୋପନୀୟ ରଖେ। ଚନ୍ଦ୍ରର ଦୁଇଟି ପଟ ପରି ମଣିଷ ଚରିତ୍ରର ମଧ୍ୟ କଳା-ଧଳା ଦୁଇଟି ଦିଗ ଚିରକାଳ ଭାସ୍ୱର। ଆମେ ଦେଖୁ ସବୁବେଳେ ବାହ୍ୟମଣିଷକୁ ଯେଉଁଠି ତା' ଚରିତ୍ର ଅଲିଖିତ ବେଶ୍ ଧଳା କାଗଜ ଖଣ୍ଡିଏ; ମାତ୍ର ସେହି ସାଦା-କାଗଜର ପର ପୃଷ୍ଠାରେ କେତେ କୁତ୍ସିତ ଷାଉଥ୍ର କର୍ମଲିପି ଲିପିବଦ୍ଧ ତାହା ଆମେ ଦେଖିବାକୁ ଚେଷ୍ଟା କରୁନା। କାଳକ୍ରମେ ତାହା ହୋଇଯାଏ କଳା ପୃଥିବୀର କଥା, କଳା ପୃଥିବୀର ମଣିଷଙ୍କ କଳା ଜୀବନର ଗାଥା।

ସ୍ରଷ୍ଟା ବଟକୃଷ୍ଣ ତ୍ରିପାଠୀଙ୍କ କର୍ମମୟ ଜୀବନ ସହ 'କଳା ପୃଥିବୀର କଥା'ର ପ୍ଲଟ ଓ ଚରିତ୍ରର ସମ୍ପର୍କ ଅତି ନିବିଡ଼। ଜଣେ ପଦସ୍ଥ ପୋଲିସ୍ ଅଫିସର ଭାବେ ସେ ଆମ ସମାଜର ପର୍ଦ୍ଦା ଅନ୍ତରାଳର କେତେକ କାହାଣୀକୁ ଉନ୍ମୋଚନ କରିଛନ୍ତି ଓ ସମାଜରୁ ସେଇ କଳୁଷତାକୁ କର୍ତ୍ତବ୍ୟର ସୀମାରେଖା ମଧ୍ୟରେ ରହି ଯଥାସାଧ୍ୟ ସଂସ୍କାର କରିବାର ପ୍ରୟାସ କରିଛନ୍ତି, ଯାହାର ସୂକ୍ଷ୍ମ ମାନସିକତା ପ୍ରତିବିମ୍ବିତ ତାଙ୍କର ଏଇ ଗଳ୍ପଗୁଚ୍ଛ ନିହିତ "ଜନ୍ମଦିନ—ମୃତ୍ୟୁଦିନ", "ଅର୍ଦ୍ଧରାତ୍ରିର ଆଗନ୍ତୁକ", "ଚୌଧୁରୀ ହତ୍ୟାକାଣ୍ଡ"—ଆଦି ଗଳ୍ପରେ। ସମାଜଜୀବନରୁ ଅପରାଧ ପ୍ରବଣତାକୁ ହ୍ରାସ କରିବାର ନୈତିକ ତଥା ଅର୍ପିତଦାୟିତ୍ୱ ହେଉଛି ପୋଲିସ୍‌ର। ମାତ୍ର ତାକୁ କଳାତ୍ମକ କରି କଥା ଆକାରରେ ଉପସ୍ଥାପିତ କରିବାର ଦାୟିତ୍ୱ କଥାକାରର, ସାହିତ୍ୟିକର। ପ୍ରଥମଟି—କର୍ତ୍ତବ୍ୟ ଯାହା ପାରିଶ୍ରମିକ-ଲମ୍ବିତ; ମାତ୍ର ଦ୍ୱିତୀୟଟି ପାରିଶ୍ରମିକର ଆଶା ନରଖି ଏକ ବୃହତ୍ତର ଗଠନମୂଳକ ସାମୂହିକ ସ୍ୱାର୍ଥ ପାଇଁ

ଉତ୍ସର୍ଗୀକୃତ । ମନେହୁଏ ପ୍ରଥମଟି ଅପେକ୍ଷା ଦ୍ୱିତୀୟ ସିଦ୍ଧାନ୍ତଟିରେ ଅଧିକ ବିଶ୍ୱାସୀ କଥାକାର ଶ୍ରୀଯୁକ୍ତ ତ୍ରିପାଠୀ । ଜଣେ ପୋଲିସ୍ ଅଫିସର ଭାବେ ସେ ହୁଏତ ଅନେକ ଘଟଣା ସହ ସିଧାସଳଖ ସଂପୃକ୍ତ ଥାଇ ପାରିଥାନ୍ତି, ମାତ୍ର ସେହିସବୁ ଘଟଣା ଓ ଚରିତ୍ରକୁ କଳାତ୍ମକ କରି ସେମାନଙ୍କଠାରେ ସମ୍ବେଦନଶୀଳ କଥାକାରର ମାନସିକତାକୁ ସଂଯୋଗ କରିବା ନିଶ୍ଚୟ ତାଙ୍କ ପାଇଁ ବୈଶିଷ୍ଟ୍ୟପୂର୍ଣ୍ଣ କଥା ।

'କଳା ପୃଥିବୀର କଥା' ଡିଟେକ୍ଟିଭ କାହାଣୀ ନୁହେଁ । ସମାଜରେ ସଂଘଟିତ ରହସ୍ୟ ରୋମାଞ୍ଚ ଘଟଣା ଓ ଆବର୍ତ୍ତିତ ତଜ୍ଜନିତ ଚରିତ୍ରମାନଙ୍କୁ କଳାତ୍ମକ ଭାବେ ପରିବେଷଣ କରି ସମାଜଜୀବନର ଅପରାଧ ପ୍ରବଣତା ଦିଗ ପ୍ରତି ଇଙ୍ଗିତ କରିବାର ବିଶିଷ୍ଟ ଇଚ୍ଛାଭାଗକୁ ନେଇ ଏହି ଗଳ୍ପ ସଂକଳନ ପ୍ରକାଶିତ । ରହସ୍ୟ ରୋମାଞ୍ଚ କାହାଣୀ ଆମ ସାହିତ୍ୟରେ ଥିଲି, ମାତ୍ର ସେ ସବୁଥିରେ Art ନଥିଲି, ଥିଲି କେବଳ ପାଠକକୁ ରୋମାଞ୍ଚିତ କରି କିଛିସମୟ ପାଇଁ ସ୍ନାୟୁଗତ ଉତ୍ତେଜନା ସୃଷ୍ଟି କରିବାର ଅଭିପ୍ସା । ମାତ୍ର 'କଳା ପୃଥିବୀର କଥା'ରେ କଳା ଭାଗ (Art Plot) ଅଧିକ, ଚରିତ୍ରମାନଙ୍କର କାର୍ଯ୍ୟକଳାପ ଅସ୍ୱାଭାବିକତା ରହିତ, କଥାବସ୍ତୁ ବିଶ୍ୱାସଯୋଗ୍ୟ, ଅତିମାନୁଷିକତା ଅପେକ୍ଷା ମଣିଷର ପରିସ୍ଥିତିଜନିତ ଜୀବନ ସଂଗ୍ରାମର ଚିତ୍ର ଅତି ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ଦେଇ ରୂପବନ୍ତ ।

'କଳା ପୃଥିବୀର କଥା' ଆମ କଥା ସାହିତ୍ୟରେ ଏଇ ଦୃଷ୍ଟିରୁ ଏକ ବିଶିଷ୍ଟ ସଂଯୋଜନା । ଏହା କେବଳ ପ୍ରଭାବ ପକାଇବ ନାହିଁ, ସାଂପ୍ରତିକ କଥାସାହିତ୍ୟରେ ନିଶ୍ଚୟ ସୃଷ୍ଟି କରିବ ଏକ ସାମାଜିକ ଆଦର୍ଶବୋଧ, ବଳିଷ୍ଠ ବ୍ୟକ୍ତିତ୍ୱ ଗଠନର ଭୂମିକା । ସ୍ରଷ୍ଟାଙ୍କ କଳା-ପ୍ରାଣ ଲେଖନୀ ଆମ କଥାସାହିତ୍ୟକୁ ଏଇପରି ସମୃଦ୍ଧ କରୁଥାଉ—ଏହାହିଁ କାମନା ।

**ଡ଼କ୍ଟର ନୃସିଂହ ଷଡ଼ଙ୍ଗୀ**
ବରିଷ୍ଠ ଅଧ୍ୟାପକ, ଓଡ଼ିଆ ବିଭାଗ
ଷ୍ଟିୱାର୍ଟ ସାଇନ୍ସ କଲେଜ, କଟକ-୧

## ଗଳ୍ପ : କ୍ରମିକ





## ଜନ୍ମଦିନ — ମୃତ୍ୟୁ ଦିନ

ହଁ ମୁଁ ଏସ୍. ପି. କହୁଛି..........

ସାର୍ ! ମୁଁ ସୀତା ଫ୍ରମ୍ ହୋଟେଲ ଇଣ୍ଟର୍‌ନ୍ୟାସନାଲ୍ ।

ଏସ୍, ସୀତା ! ହ୍ୱାଟ୍ ହାପେନ୍.......... ?

“ସାର୍, ଗୋଟିଏ ଅତ୍ୟନ୍ତ ଜରୁରୀ ଘଟଣା ଘଟିଯାଇଛି । ମୁଁ ଟେଲିଫୋନ୍‌ରେ କିଛି କହିବାକୁ ଚାହୁଁନି । ଆପଣ ମୋତେ ପାଞ୍ଚମିନିଟ୍ ସମୟ ଦେଇ ପାରିବେ ଯଦି, ମୁଁ ସଙ୍ଗେ ସଙ୍ଗେ ଆପଣଙ୍କ ଅଫିସ୍‌ରେ ପହଞ୍ଚିବି ।”

ଦୈନନ୍ଦିନ ବ୍ୟସ୍ତତା ଭିତରେ ଏସ୍. ପି. ରାଉରକେଲା, ମିସ୍ ସୀତା, ହୋଟେଲ ଇଣ୍ଟରନ୍ୟାସନାଲ୍‌ର ଓନର କମ୍ ପ୍ରୋପାଇଟର୍‌ଙ୍କୁ ସମୟ ଦେଲେ ଯଦିଓ ସେତେବେଳକୁ ଦିନ ଦୁଇଟା ବାଜିବାକୁ ଦଶ-ମିନିଟ୍ ବାକିଥାଏ । ସେ ଜାଣନ୍ତି ପୋଲିସ୍ ଚାକିରୀରେ ଥରେ ସକାଳୁ ଘରୁ ବାହାରିଲେ ଫେରିବା ସମୟଟା ତାଙ୍କ ହାତରେ ନଥାଏ । ଶିଳ୍ପ-ନଗରୀ ରାଉରକେଲାରେ ବିଭିନ୍ନ ସମସ୍ୟା—ଶ୍ରମିକ୍ ଆନ୍ଦୋଳନ, ଫ୍ୟାକ୍ଟ୍ରିରେ ଦୁର୍ଘଟଣା...ପ୍ରତ୍ୟେକ ଦିନ କିଛି ନା କିଛି ଗୋଟେ

ପ୍ରୋବ୍ଲେମ । ତା’ ଛଡ଼ା ଏଇ ସହରଟି ବିହାର, ମଧ୍ୟପ୍ରଦେଶର ସୀମା ଅଞ୍ଚଳରେ ଅବସ୍ଥିତ ହେତୁ, ଏ ସବୁ ପ୍ରଦେଶର ସୀମାନ୍ତ ଜିଲ୍ଲାରୁ ବହୁ-ସଂଖ୍ୟାରେ ଅପରାଧୀ ଏଠାକୁ ବିଭିନ୍ନ ପ୍ରକାର ଅପରାଧ ଘଟେଇବାକୁ ଆସିଥାଆନ୍ତି । ତେଣୁ ଏଇ ହୋଟେଲ୍‌ମାନଙ୍କରେ କିଛି ନା କିଛି ଘଟଣା ଦୁର୍ଘଟଣା ସବୁଦିନ ଘଟିଥାଏ ।

ପାଞ୍ଚମିନଟ୍ ଭିତରେ ମିସ୍ ଶୀତାଙ୍କ ହ୍ୱାଇଟ୍ ମାରୁତି କାର୍, ଏସ୍. ପି. ସାହେବଙ୍କ ଅଫିସ୍ ପୋର୍ଟିକୋ ଆଗରେ ବ୍ରେକ୍ ଦେଲା । ମିସ୍ ଶୀତା ଗାଡ଼ିରୁ ଓହ୍ଲାଇ ସିଧା ଏସ୍.ପି. ସାହେବଙ୍କ ଅଫିସ୍ ଗୃହଭିତରକୁ ପ୍ରବେଶ କଲେ । ଆଗରୁ ମିସ୍ ଶୀତା ଆସିବେ ବୋଲି ଅଫିସ୍ ଅର୍ଡ଼ର୍ଲିକୁ କୁହାଯାଇଥିଲା ।

ଅଫିସ ଗୃହରେ ପ୍ରବେଶ କଲାମାତ୍ରେ ମିସ୍ ଶୀତା କର୍ଟେସି ସବୁ ଭୁଲିଯାଇ ଗୋଟେ ଚେୟାର୍ ଭିଡ଼ିନେଇ ବସିପଡ଼ିଲେ । ସୁନ୍ଦର ମୁହଁରେ ତାଙ୍କର ଅସ୍ଥିରତାର ଭାବ, କପାଳର ବିନ୍ଦୁ ବିନ୍ଦୁ ସ୍ୱେଦ ସ୍ପଷ୍ଟଭାବରେ ଜଣେଇ ଦେଉଥାଏ ଯେ, ସେ ଯେପରି ଅତ୍ୟନ୍ତ ମର୍ମାହତା ଏବଂ ଚିନ୍ତିତା । ଏସ୍. ପି. ସାହେବ ଆଗରୁ ମିସ୍ ଶୀତାଙ୍କୁ ବହୁଥର ଦେଖିଛନ୍ତି । ପାଞ୍ଚଫୁଟ ଛଅଇଞ୍ଚ ଉଚ୍ଚତା ତନୁପାତଳୀ ମିସ୍ ଶୀତା ଆମେରିକାରୁ ଏମ୍. ବି. ବି. ଏସ୍. ପାଶ୍ କରି ଆସିଲାପରେ, ବାପାଙ୍କର ଅଗାଧ ସମ୍ପତ୍ତିର ଦାୟିତ୍ୱ ନେଇ ଶିଳ୍ପ ନଗରୀ ରାଉରକେଲାରେ ଗଢ଼ିଥିଲେ "ହୋଟେଲ ଇଣ୍ଟର ନ୍ୟାସନାଲ୍" । ଏଇ ପାଞ୍ଚ ତାରକା ହୋଟେଲ୍ ଭାରତର କୌଣସି ପାଞ୍ଚତାରକା ହୋଟେଲଠାରୁ କମ୍ ନୁହେଁ, ବରଂ ଏଇ ହୋଟେଲରେ ଓଡ଼ିଶୀ କଳା ଆଉ କାରିଗରୀର ନିଖୁଣ ଛବି ପ୍ରତି-ପାଦନ କରିଛନ୍ତି ଶୀତା । କୋଣାର୍କର ମୂର୍ତ୍ତି ପରି ଜୀବନ୍ତ ପଥର ମୂର୍ତ୍ତି, ପିପିଲି ଚାନ୍ଦୁଆ, ବାଣପୁର ବେତକାମ, ଶିମୁଳି ପାହାଡ଼ ସବାଇଘାସର ଦଉଡ଼ିରେ ତିଆରି ଗାଲିଚା, ମୟୂରଭଞ୍ଜର କଳାମୁଗୁନି ପଥରରେ ତିଆରି କାନ୍ଥ ହୋଟେଲ୍ ଇଣ୍ଟରନ୍ୟାସନାଲ୍‌କୁ ଅତ୍ୟାଧୁନିକ ହୋଟେଲ୍ ଭାବେ ପରିଚିତ କରିଦେଇଛି । ତା’ଛଡ଼ା ହୋଟେଲର ପ୍ରତ୍ୟେକ

କର୍ମଚାରୀମାନଙ୍କୁ ମିସ୍ ଗୀତା ନିଜେ ଇଣ୍ଟରଭିଉ କରି ସିଲେକ୍ଟ କରିଛନ୍ତି ।

ଗୀତାଙ୍କ ଲାଗି ହୋଷ୍ଟେଲ୍ ଇଣ୍ଟରନ୍ୟାସନାଲ୍ ସବୁବେଳେ ଭରପୂର । ରାଉରକେଲା ଷ୍ଟିଲପ୍ଲାଣ୍ଟର ହେଉ କମ୍ପା ସରକାରୀ ପାର୍ଟି ହେଉ ସବୁ ଏହି ହୋଟେଲ୍‌ରେ ହିଁ ହୋଇଥାଏ । ଗୀତା······ରାଣୀ ମହୁମାଛି ଏବଂ ତାଙ୍କ ଚାରିପଟେ ଯେପରି ହୋଷ୍ଟେଲ୍‌ର ପ୍ରତ୍ୟେକ କର୍ମଚାରୀ ଘୂରି ବୁଲୁଥାନ୍ତି । ପ୍ରତ୍ୟେକ କର୍ମଚାରୀଙ୍କ ସୁବିଧା ଅସୁବିଧା ଗୀତା ନିଜେ ବୁଝନ୍ତି । ଜନ୍ମଦିନଠାରୁ ଆରମ୍ଭ କରି ବିବାହ ଉତ୍ସବରେ ଯୋଗଦେବାକୁ ସେ କେବେହେଲେ ଭୁଲନ୍ତି ନାହିଁ । ସେଥିପାଇଁ ହୋଷ୍ଟେଲ୍‌ର ପ୍ରତ୍ୟେକ କର୍ମଚାରୀ ଗୀତାଙ୍କୁ ଭଲ ପାଆନ୍ତି, ମା' କି ଭଉଣୀ ଭଳି ଭକ୍ତି କରନ୍ତି ।

ଚେୟାର ଉପରେ ବସିସାରିଲା ପରେ ଗୀତା ଆରମ୍ଭ କଲେ, "ସାର୍ ପିଟର୍‌କୁ ଆପଣ ଭଲଭାବେ ଜାଣନ୍ତି—ପିଟର୍···ଜନ୍ ପିଟର୍ ···ବାର୍ ଆଟେଣ୍ଡାଣ୍ଟ୍·········"

"ହିଁ······ପିଟର୍‌ଙ୍କୁ ମୁଁ ଭଲଭାବେ ଜାଣେ······ହ୍ୱାଟ୍ ହାପେନ୍ ?·········" ଏସ୍. ପି.ଙ୍କ ପ୍ରଶ୍ନବାଚୀ !

ମିସ୍ ଗୀତା ଭୟ-ଶଙ୍କିତ କଣ୍ଠରେ କହିଲେ ପିଟର୍‌ର ସେଦିନ ଥିଲା ଜନ୍ମଦିନ । ଛବିଶ ବର୍ଷ ପାର ହୋଇଛି ପିଟର୍ । ମିସ୍ ଗୀତା ସ୍ୱତନ୍ତ୍ର ଭାବେ ତାଙ୍କ ହୋଷ୍ଟେଲ୍‌ରେ 'କେକ୍' ତିଆରିକରି ତାକୁ ସକାଳେ ଉପହାର ଦେଇଥିଲେ । ତା'ଛଡ଼ା ସକାଳୁ ସକାଳୁ ସେ ନିଜେ ହୋଷ୍ଟେଲ୍ ଆସି ତାକୁ ଜନ୍ମଦିନର ଶୁଭେଚ୍ଛା ସହ ପୁଷ୍ପଗୁଚ୍ଛ ଦେଇ ବଧେଇ ଜଣାଇଥିଲେ । ପିଟର୍‌ର ଅନୁରୋଧରେ ଦିନ ବାରଟା ପରେ ତା'କୁ ହୋଷ୍ଟେଲ୍ କାମରୁ ଛୁଟି ଦିଆଯାଇଥିଲା । ତା'ର ଜନ୍ମଦିନକୁ ସେ ସାଥୀମାନଙ୍କ ସହିତ ଉପଭୋଗ କରିବା ପାଇଁ ବଣ୍ଡାମୁଣ୍ଡା ରେଲୱେ

କଲୋନିକୁ ମଟରସାଇକେଲ୍ ଯୋଗେ ଯାଉଥିଲା । ମଟର ସାଇକେଲ୍-
ରେ ଗଲାବେଳେ ଦାସ ଚଉଧୁରୀ, ଜଗା ରାଓ, ମହାପାତ୍ର ତିନିଜଣ ମିଶି
ବନ୍ଦମୁଣ୍ଡା ବଜାର ଛକ ଉପରେ ତାକୁ ଫାଶୀ, ଖ୍ଲୁରୀ ଦ୍ୱାରା ହତ୍ୟା-
କଲେ । ତାର ରକ୍ତାକ୍ତ ଶରୀର ଏବେ ରାଉରକେଲା-ବନ୍ଦମୁଣ୍ଡା ରାସ୍ତା
ଉପରେ ପଡ଼ିରହିଛି । ଶହ ଶହ ଲୋକ ଘେରି ରହିଛନ୍ତି । ସେ
ଟେଲିଫୋନ ପାଇ ତାଙ୍କୁ ଜଣାଇବାକୁ ଆସିଲେ ।

ଏସ୍. ପି. ସାହେବ୍ ଦିନ ଦୁଇଟା ବେଳେ ଶହ ଶହ ଲୋକଙ୍କ
ଉପସ୍ଥିତିରେ ପିଟର୍ ମର୍ଡ଼ର କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ସଙ୍ଗେ
ସଙ୍ଗେ ଓ୍ୱାର୍‌ଲେସ୍ ଦ୍ୱାରା ବନ୍ଦମୁଣ୍ଡା ଥାନାକୁ କଣ୍ଟାକ୍ଟ କଲେ ।
ଥାନାର ଓ୍ୱାରଲେସ୍ ଜଣାଇଲା ଯେ ଦିନ ଗୋଟାଏ ପଇଁତ୍ରିଶ
ମିନଟ୍‌ରେ ରାଉରକେଲା ବନ୍ଦମୁଣ୍ଡା ରାସ୍ତାର ହାଇସ୍କୁଲ ଛକପାଖେ
ପିଟର୍ ତାଙ୍କ ମଟର ସାଇକେଲ୍‌ରେ ଆସୁଥିବା ସମୟରେ, ଆଗରୁ
ଅପେକ୍ଷା କରିଥିବା ତିନିଜଣ ସଶସ୍ତ୍ର ଯୁବକ ତାଙ୍କ ମଟର ସାଇକେଲ୍‌କୁ
ଅଟକାଇ, ବଡ଼୍‌ରାସ୍ତା ଉପରେ ଶହ ଶହ ଲୋକଙ୍କ ଆଖି ଆଗରେ ତାଙ୍କୁ
ହତ୍ୟା କଲେ ।

ଓ୍ୱାରଲେସ୍‌ରୁ ଖବର ସଂଗ୍ରହ କଲାପରେ ଏସ୍. ପି. ସାହେବ
ବନ୍ଦମୁଣ୍ଡା ଯିବାପାଇଁ ପ୍ରସ୍ତୁତ ହେଲେ । ଯିବା ପୂର୍ବରୁ ମିସ୍ ଗୀତା
କହିଲେ—"ସାର୍ ଆପଣ ତ ନୂଆ ହୋଇ ଏଠାରେ ଜଏନ୍ କରିଛନ୍ତି,
ମିଃଟର୍ ହତ୍ୟାକାଣ୍ଡର ପଛକଥା ବୋଧେ ଜାଣିନଥିବେ । ଆପଣଙ୍କ
ଅଫିସ କାଗଜ କେବଳ ପିଟର୍‌ଙ୍କୁ ଜଣେ ଅପରାଧୀ ଭାବେ ଜାଣେ, ମାତ୍ର
ତା'ର ହୃଦୟ, ଅପରାଧର କାରଣ ଇତ୍ୟାଦି ବିଷୟରେ ଅଫିସ୍
ଫାଇଲ୍‌ରେ କିଛି ଲିପିବଦ୍ଧ ନଥିବ । ଅଳ୍ପଦିନ ତଳେ ପିଟର୍ ମୋ ଆଗେ
ତା' ଜୀବନ ବୃତ୍ତାନ୍ତ କହିଥିଲା । ମୁଁ ସଂକ୍ଷେପରେ ଆପଣଙ୍କ ଆଗରେ
କହୁଛି । ଆପଣଙ୍କ ସମୟ ନଷ୍ଟ କରୁଛି ବୋଲି କ୍ଷମା ଦେବେ ।

"ମିସ୍ ଗୀତା ! ଅପରାଧ ଏବଂ ଅପରାଧୀର ପୂର୍ବ ଇତିହାସ

ତଦନ୍ତକାରୀ ଅଫିସର୍‌ଙ୍କୁ ଉପଯୁକ୍ତ ତଦନ୍ତ ପାଇଁ ଯଥେଷ୍ଟ ସାହାଯ୍ୟ କରିଥାଏ । ପ୍ରତ୍ୟେକ ତଦନ୍ତକାରୀ ଅଫିସର୍ ଅପରାଧର ମୂଳ ଇତିହାସ ବିଷୟରେ ଜାଣିଲାପରେ ତାଙ୍କର ସଫଳ ତଦନ୍ତ କରିପାରିଥାନ୍ତି··। କହିଲେ ଏସ୍. ପି. ସାହେବ ।

ମିସ୍ ରୀତା କହିଲେ······ ··

ଜନ୍ ପିଟର୍ ଘର ରାଉରକେଲା ସହରରେ ନୁହେଁ । ତା'ର ଜନ୍ମ ବାରଣାସୀ ସହରରେ । ବାପ ଥିଲେ ଜଣେ ରେଲୱେ ଗାର୍ଡ଼ ଆଉ ମା' ବାରଣାସୀ ମେରୀ ଷ୍ଟୁଆର୍ଟ ସ୍କୁଲରେ ଶିକ୍ଷୟିତ୍ରୀ । ସେମାନେ ଥିଲେ ଆଙ୍ଗ୍ଲୋଇଣ୍ଡିଆନ୍ ପରିବାରର ଲୋକ । ପିଟର୍‌କୁ ଯେତେ-ବେଳେ ଚଉଦବର୍ଷ ସେତେବେଳେ ସେ ଷ୍ଟୁଆର୍ଟ ସ୍କୁଲର ଟେନ୍ ଷ୍ଟାଣ୍ଡାର୍ଡ଼ର ଛାତ୍ର । ଛାତ୍ର ହିସାବରେ ତା'ର ନାଁ ସ୍କୁଲରେ ସମସ୍ତେ ଜାଣନ୍ତି । ଅତ୍ୟନ୍ତ ମେଳାପୀ, ସ୍କୁଲ ଫୁଟ୍‌ବଲ୍ ଟିମ୍‌ର କ୍ୟାପଟେନ୍ ଏବଂ ଭଲ ଛାତ୍ର । ଦିନେ ଫୁଟ୍‌ବଲ ପଡ଼ିଆରେ ପିଲଙ୍କ କଳିକୁ କେନ୍ଦ୍ରକରି ପିଟର୍ ବିରୁଦ୍ଧରେ ସ୍କୁଲ ହେଡ୍‌ମାଷ୍ଟର ତାଙ୍କ ମା'ଙ୍କ ପାଖେ ଅଭିଯୋଗ ଆଣିଥିଲେ । ସେଦିନ ଘରକୁ ଫେରିଲା ପରେ ମା' ପିଟରକୁ ତାଗିଦ୍ କରିଥିଲେ, ମାତ୍ର ସେହି ଘଟଣାକୁ କେନ୍ଦ୍ରକରି ପିଟର୍‌ଙ୍କ ବାପା ତାକୁ ଦୁଇ ଚଟକଣା ମାରି ଗାଳି ଦେଇଥିଲେ । ପିଟର୍ କଥା କେହି ଶୁଣି ନଥିଲେ । ସେ ଯେ ନିର୍ଦ୍ଦୋଷ ଥିଲା ଏବଂ ତାକୁ ଅଯଥାରେ କ୍ୟାପଟେନ୍ ଥିବା ଯୋଗୁଁ ଅଭିଯୁକ୍ତ କରିଛନ୍ତି ଏକଥା ମା'କ ବାପା ବୁଝିବା ପାଇଁ ଚେଷ୍ଟା କରି ନଥିଲେ ।

ବାପାଙ୍କ ମାଡ଼ ନିର୍ଦ୍ଦୋଷ ପିଟର ମନରେ ଦାରୁଣ ଆଘାତ ଦେଇଥିଲା । ମାଡ଼ ଯେତେ ତାକୁ କାଟି ନଥିଲା, କାଟିଥିଲା ବାପା କ ମା' କେହି ତା' କଥାକୁ ବିଶ୍ୱାସ କଲେନି ବୋଲି ।

କିଶୋର ମନର ଉତ୍ତେଜନାର ବଶବର୍ତ୍ତୀ ହୋଇ ପିଟର ସେଦିନ ଘର ଛାଡ଼ିଦେଇଥିଲା । ରେଲୱେ କଲୋନୀରେ ତାଙ୍କ ଘର ।

ବେଶିବାଟ ଯିବାକୁ ପଡ଼ୁନଥିଲା । ଘରୁ ବାହାରି ଆସିଲାପରେ ଷ୍ଟେସନ୍‌-
ରେ ଲାଗିଥିବା ଗାଡ଼ିରେ ବସିପଡ଼ିଲା ପିଟର । ପ୍ରାୟ ଦେଢ଼ଦିନ ପରେ
ଗାଡ଼ି ଲାଗିଥିଲା ରାଉରକେଲା ଷ୍ଟେସନ୍‌ରେ । ଭୋକ ସମ୍ଭାଳି ନପାରି
ପିଟର ଗାଡ଼ିରୁ ଓହ୍ଲାଇ ଷ୍ଟେସନ୍‌ ଉପରେ ବୁଲିବା ସମୟରେ ଗାଡ଼ି
ଚାଲିଯାଇଥିଲା । କିଛି ସମୟ ଷ୍ଟେସନ୍‌ ଉପରେ ବୁଲାବୁଲି କଲାପରେ
ସେ ବାହାରି ଆସିଲା ଷ୍ଟେସନ୍‌ ବଜାର ଉପରକୁ । ଭୋକ ହାତରୁ
ରକ୍ଷାପାଇବା ପାଇଁ ସେ ହୋଟେଲ୍‌ ଖୋଜି ଖୋଜି ଷ୍ଟେସନ୍‌ ବଜାରର
ପଛପଟ ଗଳିଭିତର ହୋଟେଲ "ଦି ଫ୍ରେଣ୍ଡସ୍‌" ପାଖରେ ପହଞ୍ଚିଲା ।
ହୋଟେଲ ଭିତରେ ପଶୁ ପଶୁ ପିଟର ଦେଖିଲା ଦଳେ ଲୋକ ହୋଟେଲ୍‌
ଭିତରେ ଜୁଆଖେଳରେ ବ୍ୟସ୍ତ । ସମସ୍ତଙ୍କ ହାତରେ ମଦଗ୍ଲାସ । ସେ
ଭୟରେ ହୋଟେଲ୍‌ ଭିତରୁ ବାହାରି ଆସୁଥିବା ବେଳେ, ଜୁଆଡ଼ିଙ୍କ
ଭିତରୁ କିଏ କହିଲା ଯେ, 'ଆବେ ଶଳା ! ପୋଲିସ୍‌ ଗୁମସ୍ତ, ଏଠୁ ଯାଇ
ପୋଲିସ୍‌ରେ ଖବର ଦେବ, ଧର ତାକୁ' । ପିଟର ହୋଟେଲ ବାହାରକୁ
ଆସିଛି କି ନାହିଁ, ଜଣେ କିଏ ତା' ପଛପଟୁ ବେକଟାକୁ ଧରି ନେଇ-
ଥିବା ହେତୁ ସେ ତା କବଳରୁ ଖସି ପାରୁନଥାଏ । ଏଣେ ସେଇ
ଭୟଙ୍କର ଲୋକଟା ତାର ଗୋଟେ ହାତଧରି ଟାଣି ଟାଣି ହୋଟେଲ୍‌
ଭିତରକୁ ଆଣିଥିଲା । ସବୁ ଜୁଆଡ଼ିମାନେ ମିଶିଗଲେ । କିଏ ପିଟରର
ଚୁଟିଧରି ଭିଡ଼ିଲେଣି ତ କିଏ ପୋଲିସ୍‌ ଲୋକ କହି ବିଧାଟେ
ଥୋଇଲେଣି ।

ସେଇ ଜୁଆଡ଼ିମାନଙ୍କ ଭିତରେ ଥିଲା ମହାରାଜ । ତାର ଭଲ-
ନାମ ଥିଲା ରାମଲକ୍ଷ୍ମଣ ସିଂହ । ମାତ୍ର ସମସ୍ତେ ତାକୁ ମହାରାଜ ବୋଲି
ଜାଣନ୍ତି । ବୟସ ୩୦ରୁ ୩୫ ମଧ୍ୟରେ, ଅବିବାହିତ । ପିଟରର ଅବସ୍ଥା
ଦେଖି ମହାରାଜ ମନରେ ଦୟାହେଲା । ସେ ପିଟରକୁ ଜୁଆଡ଼ିମାନଙ୍କ
ହାତରୁ ମୁକୁଳାଇ ନିଜପାଖକୁ ଟାଣିଆଣିଲା । ଦଳେ ହିଂସ୍ର ଶ୍ୱାନଦଳ
ମଧ୍ୟରୁ ମେଣ୍ଢା ଛୁଆଟି ରକ୍ଷା ପାଇଲେ ଯେପରି ଆନନ୍ଦପାଏ, ସେହି ପରି
ପିଟର ମଦୁଆ, ଜୁଆଡ଼ିମାନଙ୍କ ମଧ୍ୟରୁ ମହାରାଜର ଅଭୟ ପାଇ ତା'
ପାଖରେ ଭୟରେ ଲାଗି ଠିଆହେଲା ।

ମହାରାଜ ସେଦିନ ନେଇ ଆସିଥିଲା ପିଟର୍‌କୁ ତା' ଘରକୁ । ବନ୍ଦମୁଣ୍ଡା ରେଲୱେ କଲୋନୀରେ ତା'ଘର । ମହାରାଜ ରେଲୱେରେ କାମ କରେ । ପିଟରକୁ ତା'କଥା ସବୁ ପଚାରିଲା, ବୁଝିଲା । ମାତ୍ର ପିଟର ତା'କୁ ତା'ର ଠିକ୍ ଠିକଣା ଦେଇନଥିଲା । ସେ ଜାଣିଥିଲା ତା'କୁ ଯଦି ମହାରାଜ ତା' ଘରକୁ ଫେରାଇଦିଏ ତା' ହେଲେ ତା' ବାପା ନିଶ୍ଚୟ ମାଡ଼ ମାରିବେ । ସେଥିପାଇଁ ଉପରେ ସେ ଠିକ୍ ଭାବରେ କିଛି କହୁନଥିଲା । ମହାରାଜ ପିଟରର ବ୍ୟବହାର, ସୁନ୍ଦର ଇଂରାଜୀ, ଭଦ୍ରରେ କଥାବାର୍ତ୍ତାରେ ମୁଗ୍ଧହେଲା । ସେ ପିଟର୍‌କୁ ନିଜ ଘରେ ରଖିଲା । ମହାରାଜ ଘରେ ପିଟର ରହି ବଢ଼ିବାକୁ ଲାଗିଲା ।

ଅଳ୍ପଦିନ ମଧ୍ୟରେ ପିଟର୍ ବନ୍ଦମୁଣ୍ଡା ରେଳୱେ କଲୋନୀର ତା' ବୟସର ପିଲାମାନଙ୍କ ମଧ୍ୟରେ ନେତା ହୋଇ ଉଠିଲା । ଖେଳ, କସରତ, ସବୁପାଇଁ ପିଟର୍ କଲୋନୀ ପିଲାମାନଙ୍କର ନେତୃତ୍ୱ ନିଏ । ସେତିକି ନୁହେଁ. ପିଟର୍ ମଧ୍ୟ ରେଲୱେ କଲୋନୀ ଏବଂ କଲୋନୀର ତଳ-ବସ୍ତିବାଲାଙ୍କ ପ୍ରିୟପାତ୍ର । ଯାହା ଘରେ ଅସୁବିଧା ହେଲେ ପିଟର୍ ସେମାନଙ୍କୁ ସାହାଯ୍ୟ କରିବାପାଇଁ ପହଞ୍ଚିଯାଏ । କଲୋନୀର ମୂଲିଆ ଶ୍ରେଣୀ ଗରିବ ଲୋକମାନଙ୍କ ପାଇଁ ପିଟର୍ ପ୍ରାଣଦେଇ କାମକରେ ।

ଅଳ୍ପଦିନ ପରେ ଗରିବ ଲୋକମାନଙ୍କ ପାଇଁ ପିଟର୍‌ର ମମତା ଅନ୍ୟରୂପ ନେଲା । ବନ୍ଦମୁଣ୍ଡା ରେଲୱେ ୟାର୍ଡ଼ ଏସିଆ ମହାଦେଶର ସବୁଠୁବଡ଼ ରେଲୱେ ୟାର୍ଡ଼ । ପ୍ରତ୍ୟେକ ମୁହୂର୍ତ୍ତରେ ଶହ ଶହ ମାଲ-ଗାଡ଼ି ଏହି ୟାର୍ଡ଼ ମଧ୍ୟକୁ ବିଭିନ୍ନ ପ୍ରକାର ମାଲ୍‌ଧରି ପ୍ରବେଶ କରେ ଏବଂ ରାଉରକେଲା ପ୍ଲାଣ୍ଟ୍‌ରୁ ଲୁହା, ଦସ୍ତା ନେଇ ବାହାରିଯାଏ । ରେଲୱେ କଲୋନୀର କେତେକ ଲୋକ ପ୍ରତ୍ୟେକ ଦିନ ଏହି ବନ୍ଦମୁଣ୍ଡା ରେଲୱେ ୟାର୍ଡ଼ରୁ ୱାଗନ୍ ଭାଙ୍ଗି ଜିନିଷ ଚୋରି କରିବା ସେମାନଙ୍କର ବ୍ୟବସାୟରେ ପରିଣତ କରିଥାନ୍ତି । ୱାଗନ୍ ଭାଙ୍ଗି ଚୋରି କରିବା ଯେପରି ତାଙ୍କର ପୈତୃକ ଅଧିକାର ।

ଓ୍ୟାଗନ ଭାଙ୍ଗି ଚୋରି କରିଥିବା ଲୋକମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ରେଲୱେ ପୋଲିସ୍ ଯେତେ ଚେଷ୍ଟା କଲେ ମଧ୍ୟ ଓ୍ୟାଗନ୍ ଭଙ୍ଗା ବନ୍ଦ ହୋଇପାରେନି । ପୋଲିସ୍ ଏଇ ରେଲୱେ କଲୋନୀ ଭିତରେ ପଶି ବସ୍ତି ଅଞ୍ଚଳର ଲୋକମାନଙ୍କ ଘର ଖାନତଲାସ୍ କରେ, ଲୋକମାନଙ୍କୁ ଥାନାକୁ ନିଏ, ମାଡ଼ ମାରେ । ହଇରାଣ ହରକତ କରେ । କେତେକ ପୋଲିସ କର୍ମଚାରୀମାନେ ମଧ୍ୟ ବସ୍ତି ଲୋକମାନଙ୍କ-ଠାରୁ ପଇସା ଆଦାୟ କରିବା ପାଇଁ ସେମାନଙ୍କ ଉପରେ ଅତ୍ୟାଚାର କରନ୍ତି । ପୋଲିସ୍ ଭିତରେ ସମସ୍ତେ ସଚ୍ଚୋଟ ନଥାନ୍ତି । କେତେଜଣଙ୍କ ଉପରେ ଖାକି ପୋଷାକ, ଭିତରେ ଚୌର୍ଯ୍ୟ ବୃତ୍ତି ହିଁ ପୋଲିସ୍ ଚାକିରି ପରି ଗୋଟିଏ ମହାନ ସେବା ସଂସ୍ଥାକୁ ବଦ୍‌ନାମ କରୁଛି ।

ପିଟରର ଦେଖିଲା, ଦିନରେ ଯେଉଁ ପୋଲିସ୍ ବସ୍ତି ଲୋକଙ୍କୁ ଘରୁ ଭିଡ଼ିନିଏ, ଥାନାରେ ମାଡ଼ଦିଏ, ରାତିରେ ସେହିମାନଙ୍କ ପାଖରେ ବସିଥାଏ, ପଇସାନିଏ, ଇତ୍ୟାଦି । କେବଳ ପୋଲିସ୍ ନୁହେଁ, କେତେ ଧୋବ-ଧାଉଳିଆ ବାବୁ ମଧ୍ୟ । ପୋଲିସ ଛଡ଼ା ବସ୍ତିର କେତେକ ଅସାମାଜିକ ବ୍ୟକ୍ତି ମଧ୍ୟ ଏହି ଲୋକମାନଙ୍କୁ ଶୋଷଣ କରନ୍ତି । ଦିନେ ଜୀବିକା ନିର୍ବାହ କରିବା ପାଇଁ ଚୋରିକରନ୍ତି, ଆଉ ଦିନେ ଚୋରଙ୍କ ଠାରୁ ତକାଯୁତି କରି ପଇସା ନିଅନ୍ତି । କିଶୋର ପିଟର୍ ମନରେ ଏହି ନିର୍ଯ୍ୟାତିତ ଲୋକମାନଙ୍କ ଦୁଃଖ ଦୁର୍ଦ୍ଦଶା ନାଚିଉଠେ । ସେ ସେହି ଲୋକମାନଙ୍କର ନେତୃତ୍ୱ ନେଲା । ଅଳ୍ପଦିନ ମଧ୍ୟରେ ସେ ତା'ର ଦଳ-ଗଢ଼ି, ଯେଉଁମାନେ ବସ୍ତିର ଚୋରମାନଙ୍କଠାରୁ ତକାଯୁତି କରୁଥିଲେ ସେହିମାନଙ୍କୁ ପ୍ରତିରୋଧ କଲା । ତା'ର ସେହି ନେତୃତ୍ୱକୁ ବସ୍ତିର ଆବାଳ ବୃଦ୍ଧ ବନିତା ସମସ୍ତେ ସମର୍ଥନ କଲେ । ଜନ୍ ପିଟର୍ ବନ୍ଦମୁଣ୍ଡା କଲୋନୀରେ ଯୁବକମାନଙ୍କର ଅପ୍ରତିଦ୍ୱନ୍ଦ୍ୱୀ ନେତା । ଅସାମାଜିକ ବ୍ୟକ୍ତି ତା' ଭୟରେ କେହି କଲୋନୀ ମଧ୍ୟକୁ ପଶିବାକୁ ସାହସ କଲେନି ।

ମହାରାଜା, ପିଟରର ନେତୃତ୍ୱକୁ ବାହାବା ଦେଲା । ସେ ମଧ୍ୟ

ପିଟରଙ୍କୁ ନିଜ କାମରେ ଲଗାଇବା ପାଇଁ ନିଷ୍ପତ୍ତି ନେଲି । ମହାରାଜ ରେଲଓ୍ୱେ କର୍ମଚାରୀମାନଙ୍କ ଇଉନିୟନର ନେତୃତ୍ୱ ନେବାପାଇଁ ଠିଆ ହୋଇଥାଏ, ମାତ୍ର ତାକୁ ତା'ର ବିପକ୍ଷଦଳ ପ୍ରତିରୋଧ କରୁଥାନ୍ତି । ପିଟର୍ ଆଉ ତା' ଦଳର ସାହାଯ୍ୟ ନେଲି ମହାରାଜ । ପିଟରଙ୍କୁ ଯେ ଜୁଆଡ଼ିମାନଙ୍କ କବଳରୁ ମୁକ୍ତକରି ନିଜଘରେ ଖୋଇଦେଇ ବଢ଼େଇ ଆଣିଛି, ତାକୁ ବା ସାହାଯ୍ୟ କରନ୍ତାନି କିପରି ! ପିଟର ଏବଂ ତା' ଦଳର ସାହାଯ୍ୟ ପାଇ ମହାରାଜ କର୍ମଚାରୀ ୟୁନିଅନ୍‌ର ନେତୃତ୍ୱ ନିଏ ଏବଂ ଅଳ୍ପଦିନ ମଧ୍ୟରେ ମହାରାଜ ସେହି ଡିଭିଜନର ଅପ୍ରତିଦ୍ୱନ୍ଦ୍ୱୀ ନେତା ଭାବରେ ଠିଆହୁଏ । ପ୍ରତ୍ୟେକ ଶ୍ରମିକ ଦଳର ପ୍ରତିଦ୍ୱନ୍ଦ୍ୱୀତାରେ କନ୍ଦଳ ଥାଏ । ଶ୍ରମିକନେତାମାନେ ସେମାନଙ୍କ ହାତରେ ନିଜ ନିଜର ମସଲ୍‌ସ୍‌-ମ୍ୟାନ ରଖିଥାନ୍ତି । ଦରକାର ବେଳେ ଏହି ମସଲ୍‌ସ୍‌ମ୍ୟାନ୍‌ମାନେ ସେ-ମାନଙ୍କୁ ତାଙ୍କ ବିପକ୍ଷ ଦଳର ଆକ୍ରମଣରୁ ରକ୍ଷା କରିଥାନ୍ତି ଏବଂ ନିଜ ଦଳର ସଭ୍ୟମାନଙ୍କୁ ଭୟଭୀତ କରାଇ ଅନ୍ୟମାନେ ତାଙ୍କ ଦଳଭିତରକୁ ଟାଣି ନେଲାବେଳେ, ଏହିମାନେ ହିଁ ସାହାଯ୍ୟ କରିଥାନ୍ତି । ପିଟରର ସାହାଯ୍ୟରେ ମହାରାଜା ଶ୍ରମିକମାନଙ୍କ ନେତା ଭାବେ ପରିଗଣିତ ହେଲା ଏବଂ କାଳକ୍ରମେ ତାର ମାନ ମର୍ଯ୍ୟଦା ବଢ଼ିବାରେ ଲାଗିଲା ।

ପିଟର୍‌ ଯଦିଓ ମହାରାଜାର ମସଲ୍‌ସ୍‌ମ୍ୟାନ ହିସାବରେ କାମ କରେ, ସେ କେବେହେଲେ ଗରିବଲୋକ କିମ୍ବା ନିରୀହ ଲୋକମାନଙ୍କୁ ହଇରାଣ କରେ ନାହିଁ ବରଂ ନିରୀହ ଗରିବ ସ୍ତ୍ରୀ ଲୋକମାନଙ୍କୁ ଯେଉଁମାନେ ଶୋଷଣ କରନ୍ତି, ଅତ୍ୟାଚାର କରନ୍ତି,ସେମାନଙ୍କ ବିରୁଦ୍ଧରେ ସେ ନିଜ ଦଳର ଲୋକଙ୍କୁ ନେଇ ଠିଆ ହୁଏ । ବସ୍ତି କାହିଁକି ଚକ୍ରଧର ପୁର ରେଲଓ୍ୱେ ଡିଭିଜନ୍‌ର ସମସ୍ତେ ପିଟରଙ୍କୁ ଜାଣନ୍ତି ଆଉ ମଧ୍ୟ ଜାଣନ୍ତି ଯେ ପିଟର କେବେହେଲେ ମଦ ପିଏନି କି କୌଣସି ସ୍ତ୍ରୀ ଲୋକଙ୍କୁ ଖରାପ ବ୍ୟବହାର ଦେଖାଏନି । ସେ ଯାତ୍ରୀବାହି ଟ୍ରେନ୍‌ରେ ବିନା ଟିକେଟରେ ବୁଲେ, ଚୋରା ବେପାରୀମାନଙ୍କୁ ଛୁରୀ ଦେଖାଇ ପଇସା ନିଏ । ପକେଟ୍‌ମାରୁ ଦଳ ତାକୁ ପ୍ରତ୍ୟେକ ମାସରେ ମାସିକିଆ ପାଉଣା ଦିଅନ୍ତି ।

ରାଉରକେଲା ପ୍ଲାଣ୍ଟ୍ ମଧ୍ୟରୁ ଯେଉଁ ଧୋବ ଫରଫରର ବାବୁମାନେ ଲକ୍ଷ ଲକ୍ଷ ଟଙ୍କାର ଚୋରାମାଲ୍ କାରବାର କରନ୍ତି, ପିଟର୍ ସେହି-ମାନଙ୍କଠାରୁ ପଇସା ନିଏ । ତା'ର ଖର୍ଚ୍ଚ ପାଇଁ ଯେତିକ ଦରକାର ସେତିକ ବାଦ୍, ସେ ବଳକା ପଇସାକୁ ବାଣ୍ଟିଦିଏ ଗରିବ ପିଲାମାନଙ୍କୁ ଆଉ ବସ୍ତିର ରୁଗ୍ଣ ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ । ସେଥିପାଇଁ ପିଟରକୁ ବସ୍ତିରେ ସମସ୍ତେ ଭଲପାଆନ୍ତି । ଷ୍ଟେସନ୍‌ରେ ଗାର୍ଡ଼ ସାହେବଙ୍କଠାରୁ ଆରମ୍ଭ କରି ଟି. ଟି. ଆଇ ପର୍ଯ୍ୟନ୍ତ ସମସ୍ତେ ତାକୁ ଖାତିର କରନ୍ତି ।

ମହାରାଜାର ବିପକ୍ଷଦଳ, ମହାରାଜା ହାତରୁ ପିଟରକୁ ଛଡ଼େଇ ନେବାର ସୁଯୋଗ ଖୋଜିଲେ । ସେମାନେ ଜାଣିଥିଲେ ପିଟର୍‌ର ସାହାଯ୍ୟ ପାଉଥିବା ପର୍ଯ୍ୟନ୍ତ ମହାରାଜାକୁ ଟ୍ରମିକ ଇଉନିୟନ୍‌ରୁ ହଟେଇଦେବା ସହଜ ନୁହେଁ । ତେଣୁ ସେମାନେ ପିଟର୍ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ ।

ଅଳ୍ପଦିନ ମଧ୍ୟରେ ପିଟର୍ ନାଁରେ ଜଣେ ସ୍ତ୍ରୀ ଲୋକ ତା' ଉପରେ ପାଶବିକ ଅତ୍ୟାଚାର କରିଛି ବୋଲି ଥାନାରେ ରିପୋର୍ଟ ଦେଲା । ତା' କଥାକୁ ସପୋର୍ଟ କରି କେତେକ ସାକ୍ଷୀ ମଧ୍ୟ ଥାନା ଅଫିସରଙ୍କ ଆଗରେ ପ୍ରମାଣ ଦେଲେ । ବହୁଦିନ ଖୋଜିଲା ପରେ ଥାନା ଅଫିସର ପିଟରକୁ ରେଲୱେ କଲୋନୀରୁ ଧନ ଧର୍ଷଣ ଅଭିଯୋଗରେ ଆରେଷ୍ଟ କରି କୋର୍ଟକୁ ଚାଲାଣ କଲେ । କୋର୍ଟରୁ ପିଟର, ଜେଲ୍ ହାଜତକୁ ଗଲା । ପିଟର ସାଙ୍ଗରେ ତା'ର ଦଳର ଆଉ ଦୁଇଜଣ ଯୁବକ ମଧ୍ୟ ଧର୍ଷଣ ଅପରାଧର ଆସାମୀ ଭାବେ ଜେଲ୍‌କୁ ଗଲେ ।

ଜେଲ୍‌ରେ ଥିବା ସମୟରେ ପିଟର ମହାରାଜା ପାଖକୁ ଖବର ଦେଲା ତାକୁ ଓକିଲ ଲଗାଇ ମୁକୁଳେଇ ଦବାପାଇଁ । ସେ ମଧ୍ୟ ତା' ପାଖକୁ ଲେଖିଥିଲା ଯେ ତା'ର ଶତ୍ରୁମାନେ ମିଛରେ ତାକୁ ଏପରି ଏକ ଧର୍ଷଣ ଘଟଣାରେ ସମ୍ପୃକ୍ତ କରାଇ ଜେଲ୍‌କୁ ପଠାଇ ଦେଇଛନ୍ତି । ପିଟର୍‌ର ଚିଠି ଏବଂ ଖବର ପାଇଲାପରେ ମଧ୍ୟ ମହାରାଜା ତାକୁ

ସାହାଯ୍ୟ କରି ଜେଲ୍‌ରୁ ଆଣିବାକୁ ଯାଇନଥିଲା । ବରଂ ସେ ଲୋକଙ୍କ ଆଗରେ କହିବୁଲିଲା ଯେ ପିଟର ଭଳି ଜଣେ ପାଶବିକ ଅତ୍ୟାଚାରୀରେ ଅଭିଯୁକ୍ତ ହୋଇଥିବା ଆସାମୀକୁ ବେଲ୍‌ରେ ଆଣିଲେ ତା'ର ଶ୍ରମିକ-ନେତା ହିସାବରେ ସମ୍ମାନରେ ଆଞ୍ଚ୍ ଆସିବ । ତେଣୁ ସେ ପିଟରକୁ ଦେଖା କରିବାକୁ ମଧ୍ୟ ଜେଲ୍‌କୁ ଯାଇନଥିଲା ।

ପିଟର୍ ମନେ ମନେ ଦୁଃଖ ଅନୁଭବ କଲା । ସେ ମହାରାଜା ଲାଗି କଅଣ ବା ନ କରିଛି, ମାତ୍ର ମିଛ କଥାରେ ତାକୁ ଗୋଟେ କେସ୍‌ରେ ଆସାମୀ କରି ଜେଲ୍‌କୁ ପଠାଗଲା । ତା'ର ସମସ୍ତ ଅନୁରୋଧ ସତ୍ତ୍ୱେ ମହାରାଜ ତାକୁ ଥରେ ହେଲେ ଦେଖିବାକୁ ଆସିଲା ନାହିଁ । ଜେଲ୍‌ରେ ଥାଇ ପିଟର ବନ୍ଧୁର ବିଶ୍ୱାସଘାତକତା ଲାଗି ଭାଙ୍ଗିପଡ଼ିଲା । ଯେଉଁମାନେ ତା' ନାମରେ ମିଥ୍ୟା ମକଦ୍ଦମା ରୁଜ୍ଜୁ କରିଥିଲେ ସେମାନଙ୍କ ଉପରେ ତା'ର ଯେତେ ରାଗ ନ ଥିଲା, ତା' ଠାରୁ ବଳି ରାଗ ଅଭିମାନ ଥିଲା ଯେଉଁମାନେ ତାକୁ ଭଲଭାବେ ଜାଣି ମଧ୍ୟ ଜାଣିପାରି ନଥିଲେ ଆଉ ବିପଦ ବେଳେ ସାହାଯ୍ୟ କରିବାକୁ ଆଗେଇ ଆସି ନଥିଲେ ।

ପ୍ରାୟ ଛଅମାସ ଜେଲ୍‌ରେ ରହିଲା ପରେ ପିଟର୍ ଆଉ ତା'ର ଦୁଇଜଣ ବନ୍ଧୁ ନିଜ ଚେଷ୍ଟାରେ ବେଲ୍ ନେଇ ଫେରିଲେ । ଜେଲ୍‌ରୁ ଫେରିଲା ପରେ ପିଟର ସିଧା ଯାଇଥିଲା ମହାରାଜା ଘରକୁ, ମାତ୍ର ମହାରଜା ତାକୁ ଦାଣ୍ଡ ଦୁଆରୁ ଅପମାନିତ କରି ତଡ଼ି ଦେଇଥିଲା । କ୍ରୋଧରେ ଜର୍ଜରିତ ହୋଇ ପିଟର ସେଦିନ ଫେରିଆସିଲା ତା' ଘରୁ; ମାତ୍ର ତା' ମନରେ ପ୍ରତିହିଂସାର ବହ୍ନି ଜଳିଉଠିଲା । ଯେଉଁ ବ୍ୟକ୍ତି ତା'ର ଶାନ୍ତ, ସରଳ ଜୀବନକୁ ଗୋଟେ ଦୁର୍ଦ୍ଦାନ୍ତ ଡାକୁ ଜୀବନରେ ନିଜର ସ୍ୱାର୍ଥଲାଗି ପରିଣତ କରାଇ ଦେଇଥିଲା, ଯାହାଲାଗି ସେ ସବୁକିଛି ଭୁଲି ଜୀବନ ଉତ୍ସର୍ଗ କରିବାକୁ ଆଗେଇ ଯାଇଥିଲା, ସେଇ ଲୋକ ନିଜର ସ୍ୱାର୍ଥ ହାସଲ କରିସାରିଲା ପରେ ତାକୁ ସମସ୍ତଙ୍କ ଆଗରେ ଅପମାନ ଦେଇ ତଡ଼ିଦେଲା । ପିଟର ତା'ର ଦୁଇଜଣ ବନ୍ଧୁଙ୍କୁ ଧରି ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲା ।

୧୯୬୮ ମସିହା ଜାନୁଆରୀ ମାସ, ଶୀତ ସନ୍ଧ୍ୟାର ଆଗମନରେ ଇସ୍‌ପାତ ସହର ଥରଉଠୁଥାଏ । ଶ୍ରମିକମାନେ କାରଖାନାରୁ କାମସାରି ଘରକୁ ଫେରୁଥାନ୍ତି । ମହାରାଜା, ବସ୍ତି ଭିତରୁ ବନ୍ଦମୁଣ୍ଡା ଛକ ଉପରେ ଚା' ଦୋକାନ ସାମ୍ନାରେ ବସି ଶୀତ ସନ୍ଧ୍ୟାକୁ ଉପଭୋଗ କରିବାପାଇଁ ଚା' କପ୍‌ରେ ମୁହଁ ଦେଉଥାଏ । ବନ୍ଦମୁଣ୍ଡା କଲୋନୀର ପଛପଟ ପାହାଡ଼ ମୁଣ୍ଡର ସୂର୍ଯ୍ୟଙ୍କ ଲାଲ କିରଣ ନଇଁ ନଇଁ ଆସୁଥାଏ । ବସ୍ତି ପିଲାମାନଙ୍କ କ୍ରିକେଟ୍ ଖେଳ ରାସ୍ତା ପାଖ ପଡ଼ିଆରୁ ସେ ପର୍ଯ୍ୟନ୍ତ ସରିନଥାଏ ।

ହଠାତ୍ ପିଟର ତା'ର ସଙ୍ଗୀମାନଙ୍କ ସଙ୍ଗେ ମହାରାଜା ସାମ୍ନାରେ ଠିଆ ହେଲା । ହାତରେ ଫାର୍ଶୀ, ଛୁରୀ । ମହାରାଜା ଡରି ଯାଇଥିଲା, ମାତ୍ର ସେ କିଛି କହିବା ପୂର୍ବରୁ ପିଟର ଆଉ ତା ସଙ୍ଗୀମାନେ ମିଶି ମାରାତ୍ମକ ଆକ୍ରମଣ କଲେ । ଶହ ଶହ ଦର୍ଶକ ସାମ୍ନାରେ ମହାରାଜାର ରକ୍ତାକ୍ତ ଶରୀର ଚୁହୁଁ ଚୁହୁଁ ମୁହୂର୍ତ୍ତିକ ମଧ୍ୟରେ ରାସ୍ତା ଉପରେ ଗଡ଼ି-ପଡ଼ିଲା । କଳାକୋଚଟ ପିଚୁରାସ୍ତା ସଦ୍ୟ ରକ୍ତରେ ଲାଲ୍ ହୋଇ-ଉଠିଲା ।

କଣାବଜାରେ ବ୍ୟସ୍ତଥିବା ବ୍ୟବସାୟୀମାନେ ଘଟଣାଟିକୁ ବୁଝିବା ପୂର୍ବରୁ ଏ ସମସ୍ତ କାଣ୍ଡ ଘଟିଯାଇଥାଏ । ମହାରାଜାର ରକ୍ତାକ୍ତ ମୃତ ଦେହକୁ ଦେଖି ଅଳ୍ପ ସମୟ ମଧ୍ୟରେ ନିକଟସ୍ଥ ଦୋକାନ ବଜାର ବନ୍ଦ ହୋଇଗଲା । ରାସ୍ତାରେ ଯାଉଥିବା ଲୋକମାନେ ରାସ୍ତାଭାଙ୍ଗି ଚାଲିଗଲେ । ଜନଗହଳି ବଜାର ରାସ୍ତା ଶ୍ମଶାନରେ ପରିଣତ ହୋଇଗଲା । ପୋଲିସ୍ ଖବର ପାଇ ଥାନାରୁ ଘଟଣା ସ୍ଥଳ ଉପରକୁ କାଳ ବିଳମ୍ବ ନକରି ପହଞ୍ଚିଥିଲା । ମାତ୍ର ସେତେ-ବେଳକୁ ଘଟଣା ସ୍ଥଳରେ ଜଣେ ହେଲେ କେହି ନଥିଲେ । କେବଳ ମହାରାଜାର ମୃତ ଶରୀର ରକ୍ତାକ୍ତ ଅବସ୍ଥାରେ ପିଚୁରାସ୍ତା ଉପରେ ଲୋଟିପଡ଼ିଥାଏ । ପାଖ ଦୋକାନ ଗଳିରୁ ଗୋଟେ ଦୁଇଟା ବୁଲା କୁକୁର ରାସ୍ତା ଆଡ଼କୁ ଚାହିଁ ଶୋଇ ଧକଉଥା'ନ୍ତି । ବହୁସମୟ କଷ୍ଟ କଲାପରେ

ପୋଲିସ୍ ସମସ୍ତ ଘଟଣା ଜାଣିବାକୁ ପାଇଲେ । ଖବର ଇନ୍‌କ୍ୱେଷ୍ଟ କଲାପରେ, ଶବକୁ ବ୍ୟବଚ୍ଛେଦ ପାଇଁ ଡାକ୍ତରଖାନାକୁ ପଠାଇ ଦେଇ, ଥାନାର ଭାରପ୍ରାପ୍ତ ଅଫିସର ଥାନାକୁ ଫେରିଲେ ।

ଥାନାକୁ ଫେରି ସେ ଯାହା ଦେଖିଲେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଥାନା ବାରଣ୍ଡାର ସାମ୍ନା ପିଣ୍ଡାରେ ପିଟର ନିଜେ ବସିଛି । ଥାନା ବାବୁଙ୍କୁ ଦେଖି ସେ ନମସ୍କାର କଲା ଏବଂ ବିଶ୍ୱାସଘାତକତାର ପ୍ରତିଶୋଧ ନେବାପାଇଁ ସେ ହତ୍ୟା କରିଛି ବୋଲି ପୋଲିସ୍ ଆଗରେ ମାନିଗଲା । ପୋଲିସ୍ ଅଫିସର ପିଟରକୁ ଆରେଷ୍ଟ କଲେ, ଏବଂ ପରଦିନ କୋର୍ଟକୁ ଚାଲାଣ କରିଥିଲେ । ମହାରାଜାର ହତ୍ୟାପରେ ତା'ର ଦଳର ଲୋକମାନେ ମର୍ମାହତ ହୋଇ ପଡ଼ିଥିଲେ । ମାତ୍ର ସେମାନଙ୍କର କିଛି କରିବାର ନଥିଲା । ପିଟର ଏବଂ ତା'ର ସଙ୍ଗୀମାନେ ଜେଲ୍‌କୁ ଗଲାପରେ ସାମ୍ପ୍ରତିକ ଦଳଗତ ଦ୍ୱନ୍ଦ୍ୱ ଏଡ଼େଇ ହୋଇ ଯାଇଥିଲା ।

ହତ୍ୟା ମକଦ୍ଦମାର ପୁଙ୍ଖାନୁପୁଙ୍ଖ ତଦନ୍ତ ପରେ ପୋଲିସ୍, ପିଟର ଏବଂ ତା'ର ଦୁଇବନ୍ଧୁଙ୍କ ବିରୁଦ୍ଧରେ ଚାର୍ଜସିଟ୍ ପଠାଇଥିଲେ । ମହାରାଜା ହତ୍ୟାମକଦ୍ଦମା କୋର୍ଟରେ ବହୁଦିନ ଧରି ଚାଲିଲା । କୋର୍ଟରେ ମକଦ୍ଦମା ଚାଲିଲା ସମୟରେ ଶହ ଶହ ଦର୍ଶକ କୋର୍ଟରେ ଉପସ୍ଥିତ ହୋଇ ସାକ୍ଷୀମାନଙ୍କର ବୟାନ ଶୁଣୁଥାନ୍ତି ।

ଯଦିଓ ପିଟର ପୋଲିସ୍ ଆଗରେ ନିଜେ ହତ୍ୟା କରିଛି ବୋଲି ସ୍ୱୀକାର କରିଥିଲା, ଅଦାଲତ୍ର ଆଗରେ ସେ ହତ୍ୟା କରିନାହିଁ ଏବଂ ପୋଲିସ୍ ମିଥ୍ୟାରେ ତା' ବିରୁଦ୍ଧରେ ମକଦ୍ଦମା ରୁଜୁ କରିଛି ବୋଲି କହିଥିଲା । ହତ୍ୟା ସମୟରେ ସେ ବନ୍ଦମୁଣ୍ଡା ଅଞ୍ଚଳରେ ଉପସ୍ଥିତ ନ ଥିଲା ବୋଲି ପ୍ରମାଣ ଦର୍ଶାଇଥିଲା । ପୋଲିସ୍ ଆଗରେ ଦୋଷ ସ୍ୱୀକାର କରିଥିଲେ ମଧ୍ୟ ଭାରତୀୟ ସାକ୍ଷୀ ଆଇନ୍‌ର (ଇଣ୍ଡିଆନ୍ ଏଭିଡ଼େନ୍‌ସ ଆକ୍ଟ) ୨୫ ଧାରାନୁଯାୟୀ ସେହି ସ୍ୱୀକାରୋକ୍ତିକୁ ପ୍ରମାଣ

ପାଇଁ ବିଗୃର ବେଳେ ଦୋଷୀ ବିରୁଦ୍ଧରେ ନିଆଯାଏ ନାହିଁ । ତାହାକୁ ବିଗୃରକୁ ନିଆଯାଇ ନଥିଲା ବରଂ ତାର ପରବର୍ତ୍ତୀ ଷ୍ଟେଟ୍‌ମେଣ୍ଟ୍‌କୁ ବିଗୃରକୁ ନିଆଯାଇଥିଲା । ଶେଷରେ ପିଟର ନିର୍ଦ୍ଦୋଷରେ ହତ୍ୟା-ମକଦ୍ଦମାରୁ ଖଲାସ ହେଲା । ଯେଉଁଦିନ ସେ କୋର୍ଟରୁ ନିର୍ଦ୍ଦୋଷରେ ଖଲାସ ହେଲା, ସେ ଦିନ ହଜାର ହଜାର ଦର୍ଶକ ଆଶ୍ଚର୍ଯ୍ୟ ହୋଇ-ଯାଇଥିଲେ । ସେମାନେ ସମସ୍ତେ ଭଲଭାବେ ଜାଣନ୍ତି ଏବଂ କେତେକ ଦେଖିଥିଲେ ଯେ ପିଟର ବିଚ୍‌ରାସ୍ତା ଉପରେ ମହାରାଜାଙ୍କୁ ହତ୍ୟା କରିଥିଲା ।

ହତ୍ୟା ମକଦ୍ଦମାରୁ ଖଲାସ ହେଲାପରେ, ପିଟର ଭଲମଣିଷ ହେବାକୁ ଚେଷ୍ଟା କରିଥିଲା । ସେ ତା' ଦଳଠାରୁ ଦୂରେଇଯାଇ ହୋଟେଲ୍‌ରେ ଗୃକିରି କରି ନିଜର ଜୀବିକା ନିର୍ବାହ କରିବାପାଇଁ ଆଗେଇ ଆସିଥିଲା । ହୋଟେଲ୍ ଇଣ୍ଟର୍‌ନ୍ୟାସନାଲ୍‌ରେ ସେ ଥିଲା ବାର୍ ଆଟେନ୍‌ଡ୍ରାଣ୍ଟ । ସମସ୍ତେ ତାକୁ ଭଲ ପାଉଥିଲେ । ସେ ଥିଲା ହୋଟେଲ୍‌ର କେତେକ ବିଶ୍ବାସୀ କର୍ମଗୃରୀମାନଙ୍କ ମଧ୍ୟରୁ ଜଣେ ।

ଯେଉଁଦିନ ପିଟର ମକଦ୍ଦମାରୁ କୋର୍ଟ ଆଦେଶରେ ଖଲାସ ହେଲା, ସେହିଦିନ ମହାରାଜାର ଦଳ ଶପଥ ନେଇଥିଲେ, ଖାଉନ୍ଦ ହାତରୁ ପିଟର ସିନା ଖସିଗଲା, ମାତ୍ର ତାଙ୍କ ହାତରୁ ସେ ଝସିଯାଇ ପାରିବନି । ସେ ଯେମିତି ଭାବେ ମହାରାଜାଙ୍କୁ ହତ୍ୟା କରିଛି ତାକୁ ସେହି ଦଣ୍ଡରେ ଦଣ୍ଡିତ କରାଯିବ । ପିଟର ଏକଥା ଜାଣିଥିଲା । ସେଥିଲାଗି ସେ କେବେ ହେଲେ ହୋଟେଲ୍ ବାହାରକୁ ଯାଏ ନାହିଁ । ଗଲେ ସବୁବେଳେ ସତର୍କତା ଅବଲମ୍ବନ କରେ । ମାତ୍ର, ସେଦିନ ଥିଲା ତା'ର ଜନ୍ମଦିନ । ଜନ୍ମଦିନ ପାଳନ କରିବାପାଇଁ ସେ କେକ୍ ନେଇଯାଉଥିଲା ତା'ର ଧର୍ମର ମା' ଘରକୁ...... ।





## ଅର୍ଦ୍ଧରାତ୍ରିର ଆଗନ୍ତୁକ

ଧାରା ଶ୍ରାବଣର ଏକ ବର୍ଷଣମୁଖର ରାତ୍ରିର ନିସ୍ତବ୍ଧ ପ୍ରହର । ଆକାଶ ମେଘାଚ୍ଛନ୍ନ । ମଝିରେ ମଝିରେ ବିଜୁଳିର ଝଲକ ସହରର ଜନଶୂନ୍ୟ ରାସ୍ତାର ସର୍ପିଳ ଗତିକୁ ସୂଚାଇ ଦେଉଥାଏ ।

ଝଡ଼ ବର୍ଷା ସାଙ୍ଗକୁ ଭୁହାଭୁହା ପବନ । ସମୁଦ୍ରର ଗର୍ଜନ ଭୀଷଣ ଆକାର ଧାରଣ କରିଥାଏ ।

ରାଜରାସ୍ତା ସନ୍ନିକଟ ସମୁଦ୍ର ବେଳା ଭୂମିଠାରୁ ଅନତି ଦୂରରେ ଏସ୍. ପି. ସାହେବଙ୍କ ଦେଢ଼ଶହ ବର୍ଷର ପୁରୁଣା ବଙ୍ଗଳା । ବିରାଟ ପାଚେରୀ ଘେରା, ନାନା ରଙ୍ଗ ବେରଙ୍ଗର ଫଳପୁଷ୍ପ ଉଦ୍ୟାନ ମଧ୍ୟରେ ପୁରୁଣା ବଙ୍ଗଳା । ଘନ ଅନ୍ଧକାର ମଧ୍ୟରେ କ୍ଷଣିକ ବିଜୁଳି ଝଲକରେ ବଙ୍ଗଳାଟିର ରାସ୍ତା ଧ୍ୱସ୍ତ ପ୍ରାଗ୍ ଐତିହାସିକ ଧ୍ୱଂସସ୍ତୂପ ପରି ଦେଖା ଯାଉଥାଏ । ଗେଟ୍ ଉପରେ ଥିବା ଆଲୁଅ ଝଡ଼ ତୋଫାନରେ ଲିଭି-ଯାଇଥାଏ । ବଙ୍ଗଳାର ବିରାଟ ପରିସର ନିସ୍ତବ୍ଧ । ପୁଲିସ୍ ଓ୍ୟାଚ୍-ମ୍ୟାନ୍ କନେଷ୍ଟବଲ ଝଡ଼ ବର୍ଷା ଭିତରେ ଆଶ୍ରୟ ନେଇଥାନ୍ତି ଘର ଭିତରେ ।

ଠକ୍...ଠକ୍...ଠକ୍...

ଏସ୍. ପି.ଙ୍କ ଶୟନକକ୍ଷ ଦରଜାରେ ମୃଦୁ କରାଘାତର ଆବାଜ୍ । ଅଳ୍ପ ସମୟ ପରେ ପୁଣି ସେଇ ଶବ୍ଦ...ଠକ୍...ଠକ୍...ଠକ୍... ।

ମିଃ. ମହାପାତ୍ରଙ୍କ ନିଦ ଭାଙ୍ଗିଗଲା··· । ତାଙ୍କ ଶୟନକକ୍ଷ ଦରଜାରେ ଏପରି ଶବ୍ଦ ସେ କେବେ ଶୁଣି ନଥିଲେ । ଦରକାର ଥିଲେ ଡଉଟି କନେଷ୍ଟବଲ ଟେଲିଫୋନ୍ ବଜର ଦେଇ ତାଙ୍କୁ ଖବର ଦେଇ-ଥାନ୍ତା । ରାତିର ନିସ୍ତବ୍ଧ ପ୍ରହରରେ ତାଙ୍କ ପାଖକୁ ଟେଲିଫୋନ୍ ଆସିବାରେ କିଛି ନୂତନତ୍ୱ ନାହିଁ – ମାତ୍ର ତାଙ୍କ ଶୟନ କକ୍ଷ ଦରଜାରେ ଏପରି ଶବ୍ଦ ସେ ତାଙ୍କର ଦୁଇବର୍ଷ ରହଣୀ କାଳ ମଧ୍ୟରେ କେବେ ଶୁଣି ନଥିଲେ ।

ଏକାକୀ ରହୁଥିବା ମିଃ. ମହାପାତ୍ରଙ୍କ ମନ ଆନ୍ଦୋଳିତ ହେବାକୁ ଲାଗିଲା । ବାହାରେ ବର୍ଷା, ତୋଫାନ—ମଝିରେ ମଝିରେ ବିଜୁଳିର ଝଲକ ଏବଂ ଘଡ଼ ଘଡ଼ିର ଶବ୍ଦ । ତାଙ୍କର ମନେ ହେଲା, ତେବେ କଅଣ ସେଇ ଅଶରୀର ଆତ୍ମା—୧୯୮୧ ମସିହା ଡିସେମ୍ବର ମାସରେ ତାଙ୍କର ଶୟନ କକ୍ଷ ସଂଲଗ୍ନ ରୁମ୍‌ରେ ନିଜ ବନ୍ଧୁକରୁ ଯେ ଗୁଳି ଚିପି ଆତ୍ମହତ୍ୟା କରିଥିଲେ ! ତତ୍କାଳୀନ ଇଂରେଜ ଏସ୍. ପି. ମିଃ. ଲି ସାହେବଙ୍କ ପିତା ଏଇ ଘରେ ଆତ୍ମହତ୍ୟା କରିଥିଲେ ।

ତାଙ୍କର ସମାଧି ଏବେ ବି ବଙ୍ଗଳାର ପଶ୍ଚିମପଟ ବିରାଟ ଅଶ୍ୱତ୍ଥ ଗଛ ମୂଳରେ ଅଛି । ମିଃ. ମହାପାତ୍ର ଆଗରୁ ଶୁଣିଥିଲେ, ମୃତ ସାହେବଙ୍କ ପ୍ରେତାତ୍ମା ଏପରି ଝଡ଼ବର୍ଷା ରାତିରେ ବଙ୍ଗଳାର ଗୋଟିଏ ରୁମ୍‌ରୁ ବାହାରି ଘରସାରା ବୁଲେ । କରୁଣ ଚିତ୍କାର କରେ ।

ମିଃ. ମହାପାତ୍ର ଟେଲିଫୋନ୍ ବଜର ଦେଇ ଡଉଟି କନେଷ୍ଟ-ବଲକୁ ଉଠେଇବାକୁ ଭାବିଲାବେଳେ, ପୁଣି ଶୁଣିଲେ ତାଙ୍କର ଦରଜା ଉପରେ ଠକ୍···ଠକ୍···ଠକ୍ ··ଶବ୍ଦ ।

ମୁଣ୍ଡ ଉପର ତକିଆତଳୁ ଗୁଳିଭର୍ତ୍ତି ପିସ୍ତଲକୁ ହାତରେ ଧରି ମିଃ. ମହାପାତ୍ର ଘର ଭିତରୁ କହିଥିଲେ···କିଏ ?

କ୍ଷୀଣଶବ୍ଦ—“ସାର୍” !

ମଣିଷର ସ୍ୱର । ପ୍ରେତାତ୍ମାର ନୁହେଁ । ମିଃ. ମହାପାତ୍ର ଗୋଟେ

ହାତରେ ପିସ୍ତଲ ଧରି କବାଟ ଖୋଲିଲେ । ଦେଖିଲେ—ବର୍ଷାରେ ଜୁଡ଼ୁବୁଡ଼ୁ ହୋଇ ଜଣେ ପ୍ରୌଢ଼ ବ୍ୟକ୍ତି । ଚକ୍ଷୁ ଦୁଇଟି କୋଟରଗତ । ମୁହଁରେ କଳାଧଳା ଅସଂଯତ ଦାଢ଼ୀ । ପିନ୍ଧିଥିବା ଲୁଗା ଦୁଇଟା ବର୍ଷାରେ ଭିଜି ଯାଇଥାଏ । ଟର୍ଚ୍ଚ ଲାଇଟ୍ ଆଲୁଅରେ ମିଃ. ମହାପାତ୍ର ଏପରି ଜଣେ ବ୍ୟକ୍ତିକୁ ଅପ୍ରତ୍ୟାଶିତ ଭାବେ ତାଙ୍କ ଶୟନ କକ୍ଷର ଦରଜା ପାଖେ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ହାତ ଘଣ୍ଟାକୁ ଚାହିଁ ଦେଖିଲେ, ରାତି ଦୁଇଟା ବାଜିବାକୁ ୨୦ ମିନିଟ୍ ବାକି ।

ଲୋକଟି ଯେ କିପରି ଛଅଫୁଟ ଉଚ୍ଚ ପାଚେରୀ ଡେଇଁ, ପହରା ଦାୟିତ୍ୱରେ ଥିବା କନେଷ୍ଟବଳ ଏବଂ ଡୋବରମ୍ୟାନ୍ କୁକୁର ଆଖିରୁ ପାର ହୋଇ ତାଙ୍କ ରୁମ୍ ପାଖକୁ ଆସି ପାରିଲା, ତାହାହିଁ ତାଙ୍କୁ ଆହୁରି ଆଶ୍ଚର୍ଯ୍ୟ କରି ଦେଇଥିଲା ।

ସେ କିଛି ପଚାରିବା ପୂର୍ବରୁ ଲୋକଟି କହିଲା, ସାର୍ ! ମୋତେ ବିଶ୍ୱାସ କରନ୍ତୁ; ମୁଁ ଆପଣଙ୍କୁ କିଛି ଗୁପ୍ତ ଖବର ଦେବାକୁ ଆସିଛି । ସମୟ ବହୁତ କମ୍··· ।

ଏତେ ରାତିରେ ଜଣେ ଜୀର୍ଣ୍ଣଶୀର୍ଣ୍ଣ ପ୍ରୌଢ଼ ବ୍ୟକ୍ତି ବର୍ଷାରେ ଭିଜି ଭିଜି ଆସିଛନ୍ତି ତାଙ୍କୁ ଗୋଟେ ଗୁପ୍ତ ଖବର ଦେବାପାଇଁ । ମିଃ. ମହାପାତ୍ରଙ୍କ ମନରେ ଲୋକଟିର କଥା ଆହୁରି କୁହେଳିକା ସୃଷ୍ଟି କଲା ।

ସେ କିଛି କହିବା ପୂର୍ବରୁ ଲୋକଟି ଆରମ୍ଭ କଲା —ସାର୍, ମୋତେ ବିଶ୍ୱାସ କରନ୍ତୁ—"ମୁଁ ଜଣେ ଦୁର୍ଦ୍ଧର୍ଷ ଡକାୟତ" । ଏଇ ହାତରେ ବନ୍ଧୁକ ଧରି ଏଇମିତି ବର୍ଷା, ଝଡ଼, ତୋଫାନ ରାତିରେ କେତେ ଘର ଲୁଟ୍ କରିଛି । କେତେ ନିରୀହ ସ୍ତ୍ରୀ, ପିଲାଙ୍କ ବେକରେ ଛୁରୀ, ବନ୍ଧୁକ ଲଗାଇ ଗହଣା ଲୁଟି ନେଇଛି । କିନ୍ତୁ ସାର୍,··· ··

ଲୋକଟି କିଛି କହିବା ପୂର୍ବରୁ ସେଇ ଅନ୍ଧାର ଭିତରେ ଆଗ-

ପଛକୁ କ୍ଷଣେ ଦୃଷ୍ଟିରେ ଥରେ ଲକ୍ଷ୍ୟ କରିନେଲା । ସେ ଯେପରି ସନ୍ଦେହ କରୁଥିଲା ତାକୁ କିଏ ଫଲୋ କରୁଛି ।

ସେ ଆଉ ଟିକିଏ ପାଖକୁ ଲାଗି ଆସି ଅନୁଚ୍ଚ ସ୍ୱରରେ ଯାହା କହିଲା—ଏସ୍. ପି. ମିଃ. ମହାପାତ୍ର ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲେ ନାହିଁ । ପ୍ରଥମେ ସେ ବିଶ୍ୱାସ କରିପାରୁ ନଥିଲେ, ମାତ୍ର ଲୋକଟି ଯେ ତାଙ୍କୁ ଏପରି ଅସମୟରେ ଶଯ୍ୟାରୁ ଉଠାଇ ମିଥ୍ୟାର ଆଶ୍ରୟ ନେବ, ସେ ଚିନ୍ତା କରି ପାରୁ ନଥିଲେ ।

ଲୋକଟି ଅନୁଚ୍ଚ ସ୍ୱରରେ କହି ସାରିଲା ପରେ ମୁହୂର୍ତ୍ତକ ମଧ୍ୟରେ ସେଇ ଅନ୍ଧକାର ମଧ୍ୟରେ ଉଭେଇଗଲା । ତା'ର ପାଦଶବ୍ଦ ମଧ୍ୟ ମିଃ. ମହାପାତ୍ରଙ୍କ କର୍ଣ୍ଣଗୋଚର ହୋଇ ପାରିଲା ନାହିଁ । ସେ ଘର ଭିତରୁ ତାଙ୍କର ସର୍ଚ୍ଚ ଲାଇଟ୍ ଧରି ବଗିଚା ଆଡ଼େ ପକାଇବା ପୂର୍ବରୁ ନିଶାର୍ଦ୍ଧର ଆଗନ୍ତୁକ ତାଙ୍କ ସରକାରୀ ବାସଗୃହ ପରିସର ମଧ୍ୟରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ।

ସେ ପର୍ଯ୍ୟନ୍ତ ତାଙ୍କ ବାସଗୃହ ସଂଲଗ୍ନ ଗୋପମୀୟ ଅଫିସ୍ ଗୃହରେ ଜଗୁଆଳୀ କନେଷ୍ଟବଲ ଦୁଇଜଣ ମଧ୍ୟ ଏ ଘଟଣା ବିଷୟରେ କିଛି ଜାଣି ପାରି ନଥିଲେ । ମନେ ମନେ ବିରକ୍ତି ପ୍ରକାଶ କରି ସେ ତାଙ୍କ ଶୟନ କକ୍ଷର କବାଟ ବନ୍ଦ୍ କଲେ ।

ବିଛଣା ଉପରେ ବସିପଡ଼ି ସେଇ ଅନ୍ଧକାର ଭିତରେ ସେ ଭାବିବାକୁ ଲାଗିଲେ । ଅଦ୍ଭୁତ ଏ ନିଶାର୍ଦ୍ଧର ଆଗନ୍ତୁକ । ଝଡ଼ ବର୍ଷା ଭିତରେ ଆଶ୍ଚର୍ଯ୍ୟଜନକ ଭାବେ ଆସି ମାତ୍ର କେତେ ମିନିଟ୍ ଭିତରେ ଖବର ଦେଇ ଫେରିଗଲା । ଅନ୍ଧକାର ଭିତରେ ତାଙ୍କର ଶୟନକକ୍ଷ ତାଙ୍କୁ ମାଡ଼ିମାଡ଼ି ପଡ଼ିଲା । ଅଳ୍ପଦିନ ହେଲା ମିସେସ୍ ମହାପାତ୍ର ଏବଂ ପିଲାମାନେ ଭୁବନେଶ୍ୱର ଯାଇଛନ୍ତି । ସେମାନେ ଏପର୍ଯ୍ୟନ୍ତ ଫେରି ନ ଥିଲେ । ଘରେ ସେ ଥିଲେ ଏକା । ବିଛଣା ଉପରେ ଢଳି ପଡ଼ି ସେ ଆଖି ଦୁଇଟା ବନ୍ଦ୍ କରି ଶୋଇବାକୁ ଚେଷ୍ଟା କଲେ, ମାତ୍ର ଆଖିକୁ ନିଦ ଆସୁ ନଥାଏ ।

ଆଗନ୍ତୁକ ବ୍ୟକ୍ତିଟି କିଏ ? ତା'ର ନାଁ-ଗାଁ ପଚାରିବା ପୂର୍ବରୁ ସେ ପଳାଇ ଯାଇଥିଲା । ଜୋର୍ କରି ଅଟକାଇ ରଖିବାକୁ ସେ ଚେଷ୍ଟା-କରି ନଥିଲେ କିମ୍ବା ଅନତିଦୂରରେ ଗୋଟିଏ ଅଫିସ୍ ଗୃହରେ ଶୋଇ-ଥିବା ଜଗୁଆଳୀ କନେଷ୍ଟ୍‌ବଲ ଦିହିଙ୍କୁ ଉଠାଇବାକୁ ଚେଷ୍ଟା କରି ନଥିଲେ । ଚାହିଁଥିଲେ ଅବଶ୍ୟ ଲୋକଟା ଯାଇପାରି ନଥାନ୍ତା, ମାତ୍ର......

ମାତ୍ର...ଲୋକଟା ମଣିଷ ନା-ମଣିଷରୂପୀ ପ୍ରେତାତ୍ମା । ବାହାରେ ଝଡ଼ର ବେଗ କମିକମି ଆସୁଥିଲା ମଧ୍ୟ ମଝିରେ ମଝିରେ ଘଡ଼ଘଡ଼ିର ଶବ୍ଦ ନିସ୍ତବ୍ଧ ସହର ବକ୍ଷରେ କମ୍ପନ ସୃଷ୍ଟି କରୁଥାଏ । ପୁରୁଣାକାଳିଆ ଏଇ ବିରାଟ ଆବାସ ମଧ୍ୟରେ ମିଃ ମହାପାତ୍ରଙ୍କ ମନ ଭିତରେ ମୃଦୁ-କମ୍ପନ ମଧ୍ୟ ସୃଷ୍ଟି ହେଲା ।

ଲୋକଟି ପ୍ରେତାତ୍ମା ବି ହୋଇପାରେ ! ତା' ଆଖିର ଦପ୍ ଦପ୍ ଚାହାଁଣୀ, ମୁହଁରେ ଅସଂଯତ ଦାଢ଼ୀ, ଦେହର ଛିନ୍ନ ବସ୍ତ୍ର ତାଙ୍କ ସନ୍ଦେହକୁ ଆହୁରି ଦୃଢ଼ୀଭୂତ କରୁଥିଲା ।

ମାତ୍ର ତାଙ୍କର ଏତେ ବର୍ଷର ପୁଲିସ୍‌ମନ ଭୂତ-ପ୍ରେତଙ୍କୁ ବିଶ୍ୱାସ କରେନି । ଏଇ ଘରେ ପୁରୁଣା ଚାକରବାକର, ଓଲିଡ଼୍ କନେଷ୍ଟ୍‌ବଲ-ମାନେ ସାହେବୀ ଭୂତକୁ ଦେଖିବାର କେତେ ପ୍ରକାର ଭୌତିକ କୌତୁକ କାହାଣୀ ତାଙ୍କ ଆଗରେ କହିଛନ୍ତି ମାତ୍ର ତାଙ୍କର ରହଣୀର ଦେଢ଼ବର୍ଷ କାଳ ମଧ୍ୟରେ ସେ କେବେହେଲେ ଦିନେ ସାହେବୀ ଭୂତର ସନ୍ଧାନ ପାଇ ନାହାଁନ୍ତି ଯଦିଓ ମିସେସ୍ ଦେଓ ତାଙ୍କ ଗେଷ୍ଟ୍‌ରୁମ୍‌ରେ ରହୁଥିବା ବେଳେ ସାହେବୀ ଭୂତର କରସ୍ପର୍ଶ ତାଙ୍କ ବେକ ତଳେ ଅନୁଭବ କରିଥିଲେ । ରାତି ପ୍ରାୟ ଦୁଇଟା । ହଠାତ୍ ମିସେସ୍ ଦେଓଙ୍କ ପାଟିଶୁଣି ସମସ୍ତେ ଉଠି ପଡ଼ିଥିଲେ । ଅବସ୍ଥା ଏପରି ହେଲା ଯେ, ମିଃ ଦେଓ କିଛିକ୍ଷଣ ପାଇଁ ଦାରୁଭୂତ ମୂରତି ପାଲଟି ଯାଇଥିଲେ । ଶେଷକୁ ମିସେସ୍ ଦେଓ ସାହେବୀ ଭୂତକଥା ବର୍ଣ୍ଣନା କରିଥିଲେ ଏବଂ ତା' ପର-ଦିନ ସକାଳୁ ଘରଗୁଡ଼ି ଚାଲି ଯାଇଥିଲେ ।

ମିଃ: ମହାପାତ୍ର ସେଦିନ ରାତିରେ ଶୋଇପାରି ନଥିଲେ । ଆଗନ୍ତୁକ ଦେଇଯାଇଥିବା ଖବର ତାଙ୍କ ମନ ମଧ୍ୟରେ ଉତ୍ତେଜନା ସୃଷ୍ଟି କରୁଥିଲା । ଯେତେ ଚେଷ୍ଟା କଲେ ବି ଆଖିକୁ ନିଦ ଆସି ନଥିଲା ।

ତା' ପରଦିନ ସକାଳୁ ଉଠିଲା ପରେ, ସଙ୍ଗେ ସଙ୍ଗେ ଇନ୍‌ସ୍‌-ପେକ୍ଟର ଦାସଙ୍କୁ ତାଙ୍କ କୋଠରୀକୁ ଆସିବା ପାଇଁ ଖବର ପଠାଇ ଦେଲେ । ଅଳ୍ପ ଦିନ ତଳେ ମିଃ: ଦାସ କଟକ ସହରରୁ ଆସି ଏଠାରେ ଜଏନ୍ କରିଥାନ୍ତି । କଟକରେ ସି:ଆଇ:ଡ଼ି: ଇନ୍‌ସ୍‌ପେକ୍ଟର ଭାବେ ତାଙ୍କ ନାଁ ବେଶ୍ ଜଣାଶୁଣା । ଲୋକଟି ଦେଖିବାକୁ ଇଂପ୍ରେସିଭ ନ ହେଲେ ମଧ୍ୟ ଅନୁସନ୍ଧାନ କାମରେ ବେଶ୍ ଧୂରନ୍ଧର ।

ଦିନ ଆଠଟା ବେଳକୁ ଇନ୍‌ସ୍‌ପେକ୍ଟର ମିଃ: ଦାସ ଆସି ତାଙ୍କ ବଙ୍ଗଳାରେ ପହଞ୍ଚିଥିଲେ । ମିଃ: ମହାପାତ୍ର ଅଳ୍ପଦିନ ପୂର୍ବରୁ ସହରର ଉପକଣ୍ଠରେ ହୋଇଥିବା ଡକାୟିତି ଏବଂ ହତ୍ୟାକାଣ୍ଡ ବିଷୟରେ ଜାଣିବାକୁ ଚାହିଁଥିଲେ । ତଦନ୍ତ କାର୍ଯ୍ୟରେ କେତେଦୂର ମିଃ. ଦାସ ଆଗେଇଛନ୍ତି, ସେ ବିଷୟରେ ତାଙ୍କ ସହିତ ଆଲୋଚନା କରିଥିଲେ ।

ସାରା ଓଡ଼ିଶାରେ ସୁନାମ ଅର୍ଜ୍ଜନ କରିଥିବା ଅନୁସନ୍ଧାନୀ ଇନ୍‌ସ୍‌ପେକ୍ଟର ମିଃ: ଦାସଙ୍କ ମୁହଁରେ ସ୍ୱେଦବିନ୍ଦୁ ଦେଖା ଯାଇଥିଲା, ସେ କିଛି କଥା କହିପାରୁ ନଥିଲେ । ତାଙ୍କ ଆସିବା ପରେ ପରେ ସହରର ଉପକଣ୍ଠରେ ଏକ ବିରାଟ ଡକାୟିତି ଓ ମର୍ଡ଼ର ହୋଇ-ଗଲା ମାତ୍ର ଏ ପର୍ଯ୍ୟନ୍ତ କେହି ଜଣେ ହେଲେ ଅପରାଧୀ ଧରା ହୋଇ ପାରିଲେନି କିମ୍ବା ଡକାୟିତ ଦଳଙ୍କ ବିଷୟରେ କିଛି ସମ୍ଭାବ୍ୟ ଖବର ମିଳିପାରିଲା ନାହିଁ । ମିଃ. ଦାସ ଲଜ୍ଜିତ ହେବାର ଦେଖି, ମିଃ. ମହାପାତ୍ର ତାଙ୍କୁ ସାନ୍ତ୍ୱନା ଦେଲେ ।

ସହରର ଉପକଣ୍ଠରେ ରାତି ଏଗାରଟା ବେଳେ ଅମ୍ବାସାଡ଼ାର୍ କାର୍‌ରେ ଆସି ଗୁଳି, ବନ୍ଧୁକ ସାହାଯ୍ୟରେ ପ୍ରସିଦ୍ଧ ପୁରୁଣା ବ୍ୟବସାୟୀ ମିଃ: ହରି ଅଗ୍ରୱାଲ୍‌ଙ୍କ ଘରୁ ୧୦ ଲକ୍ଷ ଟଙ୍କାର ସମ୍ପତ୍ତି ଲୁଟି ନେବା

କମ୍ ସାହସର କଥା ନୁହେଁ । ପୁଣି ଡାକୁଦଳ ଜାଣିଥିଲେ ଅଗ୍ରୱାଲଙ୍କ ଘରେ ଜଣେ ବନ୍ଧୁକଧାରୀ ଦରଓ୍ୱାନ୍ ରାତିରେ ଡିଉଟି କରେ । ଏହା ଜାଣି ମଧ୍ୟ ସେମାନେ ଗ୍ରେଇ ବ୍ୟବସାୟୀ ବେଶରେ ଆସିଥିଲେ । ମିଃ ଅଗ୍ରୱାଲ୍ ଗ୍ରେଇ ସୁନା କାରବାରରେ ଲିପ୍ତ ଥିବାର ଆଗରୁ ସହର-ବାସୀମାନେ ସନ୍ଦେହ କରୁଥିଲେ । ମାତ୍ର ସେପରି ପ୍ରମାଣ ନ ଥିବାରୁ ତାଙ୍କୁ ଧରା ଯାଇ ନ ଥିଲା ।

ଡାକୁଦଳ ବ୍ୟବସାୟୀ ବୋଲି ପରିଚୟ ଦେଇ ତାଙ୍କ ଦରଓ୍ୱାନ୍‌କୁ ଗେଟ୍ ଖୋଲିବାକୁ କହିଥିଲେ । ଦରଓ୍ୱାନ୍ ଗେଟ୍ ଖୋଲିବା ପାଇଁ ଉଦ୍ୟତ ହେଲାବେଳେ ସେମାନେ ତାକୁ କାବୁ କରି ନେଇଥିଲେ । ତା' ହାତରୁ ବନ୍ଧୁକ ଛଡ଼ାଇ ନେଇଥିଲେ ଏବଂ ମୁହଁରେ ଆଡ୍‌ହେସିଭ୍ ଟେପ୍ ଲଗେଇ ଦେଇ ଗେଟ୍ ପାଖ ଘରେ ବନ୍ଦ୍ କରିଦେଇ ମିଃ ଅଗ୍ରୱାଲାଙ୍କ ଘରେ ପଶିଥିଲେ ।

ଘରେ ପଶିବା ପୂର୍ବରୁ ମିଃ ଅଗ୍ରୱାଲାଙ୍କ ଦୁଇଟା ଗ୍ରେ.ହାଉଣ୍ଡ୍ ଏଇ ଅଜଣା ବ୍ୟକ୍ତିଙ୍କ ଆଡ଼େ ରାକ୍ଷସ ପରି ମାଡ଼ି ଆସିଥିଲେ, ମାତ୍ର ଡାକୁ ଦଳର ଦଳପତି ଆଖିପିଛୁଳାକେ ତାଙ୍କ ପିସ୍ତଲରୁ ଗୁଳି ଫାୟାର୍ କରି ଦୁଇଟା ଯାକ ଗ୍ରେ: ହାଉଣ୍ଡ୍ କୁକୁରକୁ ମାରିଦେଇଥିଲେ । ଅର୍ଦ୍ଧ-ରାତିରେ ଗୁଳିଶବ୍ଦ ଶୁଣି ମିଃ ଅଗ୍ରୱାଲା ଘଟଣା ବୁଝିବାକୁ ବାହାରିକୁ ଆସିବା ପୂର୍ବରୁ ଡାକୁଦଳ ମିଃ. ଅଗ୍ରୱାଲା ଏବଂ ତାଙ୍କର ପରିବାର-ବର୍ଗଙ୍କୁ ଅକ୍ତିଆର କରି ନେଇଥିଲେ । ମାତ୍ର ଅଧଘଣ୍ଟାକ ମଧ୍ୟରେ ସେମାନେ ନଗଦ କ୍ୟାସ୍, ସୁନାଗହଣା ଇତ୍ୟାଦି ପ୍ରାୟ ୧୦ ଲକ୍ଷ ଟଙ୍କାର ସମ୍ପତ୍ତି ଲୁଟି ନେଇ ଥିଲେ । ଡକାୟତି କରୁଥିବା ସମୟରେ ମିଃ. ଅଗ୍ରୱାଲାଙ୍କ ପୁଅ ଉପରଘରୁ ତାଙ୍କ ପିସ୍ତଲଧରି ଡାକୁଦଳ ଉପରକୁ ଆକ୍ରମଣ କରିଥିଲେ, ମାତ୍ର ତାଙ୍କ ଗୁଳିରେ ଡାକୁଦଳ ଲୋକମାନେ ମରିବା ପରିବର୍ତ୍ତେ, ଡାକୁଙ୍କ ଗୁଳିର ଶିକାରରେ ଅଗ୍ରୱାଲାଙ୍କ ଜବାନ୍ ପୁଅ ଟଳି ପଡ଼ିଥିଲେ ।

ଏ ଘଟଣା ଜିଲ୍ଲା ପୁଲିସ୍ ବିଭାଗ ପ୍ରତି ଏକ ଚ୍ୟାଲେଞ୍ଜ୍ ଥିଲା ।

ମିଃ. ମହାପାତ୍ର ନିଜେ ଏ କେସ୍‌ର ତଦନ୍ତ ସୁପରଭାଇଜ୍ କରୁଥିଲେ ଏବଂ ମିଃ. ଦାସ ଏହାର ତଦନ୍ତକାରୀ ଅଫିସର ଭାବେ ନିଯୁକ୍ତ ହୋଇ-ଥିଲେ । ସମସ୍ତ ଚେଷ୍ଟା ସତ୍ତ୍ୱେ ମଧ୍ୟ ଏ ପର୍ଯ୍ୟନ୍ତ ଡ଼ାକୁଦଳ କିମ୍ବା ଚୋରି ସମ୍ପତ୍ତି ବିଷୟରେ କିଛି ଖବର ମିଳି ନଥିଲା ।

ଇନସ୍‌ପେକ୍ଟର ଦାସଙ୍କ ସଙ୍ଗେ କଥାବାର୍ତ୍ତା କଲାପରେ ମିଃ: ମହାପାତ୍ର, ରିଜର୍ଭ ଇନସ୍‌ପେକ୍ଟର ଦେବ ସିଂହଙ୍କୁ ଫୋନ୍ କଲେ ଏବଂ ସଙ୍ଗେ ସଙ୍ଗେ ଦଶଜଣ 'ଜୁଡ଼ୋ' ଜାଣିଥିବା ଜଓ୍ୱାନ୍‌ଙ୍କୁ ସାଙ୍ଗରେ ଧରି ତାଙ୍କ ବଙ୍ଗଳାକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ପୁଲିସ୍ ବିଭାଗରେ କେତେକ ଅଫିସର ଏବଂ ଜଓ୍ୱାନ୍‌ମାନଙ୍କୁ ସ୍ୱତନ୍ତ୍ର "ଜୁଡ଼ୋ" ଟ୍ରେନିଂ ଦିଆଯାଇଥାଏ । ଏ ପ୍ରକାର ଶିକ୍ଷା ପାଇଥିବା ବ୍ୟକ୍ତିମାନେ ଦରକାର ବେଳେ ତିନି ଚାରିଜଣ ଦୁର୍ଦ୍ଧର୍ଷ ଡାକୁମାନଙ୍କୁ ବିନା ଅସ୍ତ୍ରରେ ମୁକାବିଲା କରି ପାରିବେ । ତା' ଛଡ଼ା ଏମାନେ ମଧ୍ୟ ବିଭିନ୍ନ ଅସ୍ତ୍ରଶସ୍ତ୍ରର ଶିକ୍ଷାଲାଭ କରିଥାନ୍ତି ।

ଖବର ପାଇ ମିଃ: ସିଂହ ୧୦ ଜଣ 'ଜୁଡ଼ୋ' ଶିକ୍ଷା ପାଇଥିବା ଜଓ୍ୱାନଙ୍କ ସଙ୍ଗରେ ଜଣେ ସର୍ଜେଣ୍ଟଙ୍କୁ ଧରି ଏସ୍. ପି.ଙ୍କ ବଙ୍ଗଳାରେ ପହଞ୍ଚି ଥିଲେ ।

## ( ଦୁଇ )

ସହରର ଅନତିଦୂରରେ ସମୁଦ୍ର କୂଳବର୍ତ୍ତୀ ଏକ ପ୍ରକାଣ୍ଡ ଝାଉଁ ଆଉ କାଜୁବାଦାମ ଜଙ୍ଗଲ ମଝିରେ ପୁରୁଣା ଦୁଇ ମହଲା କୋଠା । ପ୍ରାୟ ୭୦ ବର୍ଷ ତଳେ ଜଣେ ବଙ୍ଗାଳୀ ଜମିଦାର ଏଇ କୋଠାଟିକୁ ନିର୍ମାଣ କରିଥିଲେ । କଣ୍ଟା-ଝଣ୍ଟା ଜଙ୍ଗଲରେ ରାସ୍ତା ନଥିବା ହେତୁ ସେ ନିଜେ ସହର ପଟପଟରୁ ତାଙ୍କ ଗାଡ଼ି ଯିବା ପରି ଏକ ଗ୍ରେଟରାସ୍ତା ତାଙ୍କର ପ୍ରମୋଦ ଉଦ୍ୟାନ ପର୍ଯ୍ୟନ୍ତ ତିଆରି କରିଥିଲେ ।

ଉତ୍ତରପଟେ ଝାଉଁ, ବାଦାମ ଆଉ କଣ୍ଟା ଝଣ୍ଟା ଟଙ୍କର ଜଙ୍ଗଲ। ଆଗ ପଟେ ସମୁଦ୍ରର ବିସ୍ତୀର୍ଣ୍ଣ ବେଳାଭୂମି । ଜମିଦାର ବାବୁର ପ୍ରମୋଦ ଉଦ୍ୟାନ ଗୃହପଟେ "ଗ୍ରିନ୍ ଫେନ୍ସିଂ" କରିଥିଲେ । ତା' ଛଡ଼ା ବଗିଚାରେ ନାନା ରଙ୍ଗର ଗଛ । ମଝିରେ ଚଉଡ଼ା ପୁଷ୍କରିଣୀ । ପଦ୍ମ-ଫୁଲରେ ବର୍ଷକ ଯାକ ପୋଖରୀର ପାଣି ଦେଖାଯାଏ ନାହିଁ ।

କୋଡ଼ିଏ ଏକର ବ୍ୟାପୀ ଏହି ପ୍ରମୋଦ ଉଦ୍ୟାନ ଭିତରେ ଦୁଇ ମହଲା କୋଠା ବାହାରକୁ ଦେଖାଯାଏନା । ପୁରୁଣା କାଳିଆ କୋଠା-ଘର ଗୁଡ଼ିକ ଦେହରେ ଦଉଡ଼ିଦ୍ୱାରା ଟଣା ବଡ଼ ବଡ଼ ପଙ୍ଖା, ମେହଗାନି ଏବଂ ବର୍ମା ଟିକ୍‌ର ପଲଙ୍କ,ଡାଇନିଂ ଟେବୁଲ୍ ଆଉ ସୋଫାସେଟ୍—ସବୁ-କିଛି ସେ କାଳର ସରଞ୍ଜାମ କୋଠାଟି ଭିତରେ ପରିପୂର୍ଣ୍ଣ ଥିଲା । ଘର ପଛପଟେ ଅଳ୍ପ ଦୂରରେ ଜଗୁଆଳି ରାମ ସେଠୀ ଘର ।

ଜମିଦାରୀ ଯିବା ସଙ୍ଗେ ସଙ୍ଗେ ଜମିଦାରଙ୍କ ପ୍ରମୋଦ ଉଦ୍ୟାନ ମଧ୍ୟ ଭାଙ୍ଗି ଯାଇଥିଲା । କାଳର କରାଳ ଗତିରେ ଜମିଦାରଙ୍କ ଦୁଇ-ପୁଅ ଲଣ୍ଡନରେ ପାଠପଢ଼ି ସେଇଠି ରହିଗଲେ । ଜମିଦାର ନିଜେ ପୁରୀ ସମୁଦ୍ରକୂଳ ବଙ୍ଗଳାରେ ରହୁଥିବା ସମୟରେ ହୃଦ୍‌ରୋଗରେ ପୀଡ଼ିତ ହୋଇ ଅକାଳେ ମୃତ୍ୟୁବରଣ କଲେ । ସ୍ତ୍ରୀ ବା କଅଣ କରନ୍ତେ । କାଳ-କ୍ରମେ ପ୍ରମୋଦ ଉଦ୍ୟାନ ଜଙ୍ଗଲରେ ପରିଣତ ହେଲା । ଘରର ଆସବାବ ପତ୍ର ଭାଙ୍ଗିରୁଜିଗଲା ।

ଜଗୁଆଳୀ ରାମା ହିଁ ଯାହା ଦେଖାଚାହାଁ କରେ । ଲୋକମାନେ ସେ କୋଠା ପାଖକୁ ଯିବା କେହି ଦେଖି ନାହାଁନ୍ତି । ଜଗୁଆଳୀ 'ରାମା' କୁହେ ଯେ, ସେ ଗୋଟେ "ଭୂତକୋଠି" । ଜମିଦାର ମଲାପରେ, ସେ କେତେ ବର୍ଷ ସେଇ ଜଙ୍ଗଲରେ ପଡ଼ି ରହିଥିଲା ।

ଏଇ କେତେବର୍ଷ ତଳେ ସେ ଅନୁଭବ କଲା ଯେ, ରାତିରେ ଯେପରି ସେ ଘରେ କେତେକ ଅଶରୀରୀ ଅତ୍ମା ଯାତାୟତ କରୁଛନ୍ତି । ତାଙ୍କର ଗୁପ୍ତାହସ ସାଙ୍ଗକୁ କାଚର ଝୁମ୍ ଝୁମ୍ ଶବ୍ଦ ସେ କେତେଥର

ଶୁଣିଛୁ । ସେ ଶୁଣେ ମାତ୍ର ଭୟରେ କେବେହେଲେ ଚେଷ୍ଟା କରନ୍ତି ଦୁଇ ମହଲା କୋଠା ଉପରକୁ ଯିବାପାଇଁ । ଦିନେ ବିଳମ୍ବିତ ରାତିରେ ସେ ସହରରୁ ଫେରିଲାବେଳେ କୋଠାର ପ୍ରୋଟିକୋ ସାମ୍ନାରେ କେତୋଟି ଅଶରୀରୀ ଆତ୍ମାଙ୍କ ସମ୍ମୁଖରେ ଅନ୍ଧାରରେ ପଡ଼ିଯାଇଥିଲା । ସେମାନଙ୍କ ମାଡ଼ ଆଉ ବିକଟ ଅଟ୍ଟହାସ୍ୟରେ ତା'ର ହୋସ ଦିନକ-ପରେ ଫେରିଥିଲା । ସେ ଯେତେବେଳେ ଚେତା ଫେରିପାଏ, ଦେଖେ ଯେ, ତା'ର ଦେହଟା ପଦ୍ମ ପୋଖରୀ ହୁଡ଼ା ଉପରେ ପଡ଼ିଥିଲା । ସେଇଦିନଠାରୁ ସେ ଏଇ ପ୍ରମୋଦ ଉଦ୍ୟାନ ଛାଡ଼ି ତା' ଗାଁରେ ରହେ । ଦିନରେ ବେଳେବେଳେ ଆସି ବଗିଚା ଆଡ଼େ ବୁଲିଯାଏ ।

## ( ତିନି )

ଶ୍ରାବଣ କୃଷ୍ଣ ଚତୁର୍ଦ୍ଦଶୀ ରାତି । ଆକାଶରେ ମେଘ । ମୁହଁକୁ ମୁହଁ ଦିଶୁନଥାଏ । କଚେରୀ ଘଣ୍ଟାରେ ଠଣ୍ ଠଣ୍ ହୋଇ ରାତି ଏଗାରଟା ସୂଚାଇ ଦେଲା ।

ସହର ପ୍ରାୟ ନିସ୍ତବ୍ଧ । ଝିପି ଝିପି ବର୍ଷାରେ ଘୁମେଇ ପଡ଼ିଥିବା ନିସ୍ତବ୍ଧ ସହରର ରାଜରାସ୍ତା ଛାଡ଼ି ଆଗପଛ ହୋଇ ଦୁଇଟି ଛାୟାମୂର୍ତ୍ତି ସହରେ ପଛପଟ ଝାଉଁ, କାଜୁବାଦାମ ଜଙ୍ଗଲ ଚିରି ଆଗେଇ ଯାଇଥିବା ରାସ୍ତାରେ ଚାଲୁଥାନ୍ତି । ଦୁହିଁଙ୍କର ଆପାଦ ମସ୍ତକ ଲମ୍ବା ବର୍ଷାତି ପୋଷାକରେ ଆବୃତ । ମୁଣ୍ଡରେ କ୍ୟାପ୍, ହାତରେ ଗୋଟେ ଗୋଟେ ଟ୍ରେଚ ଟର୍ଚ୍ଚ । ମଝିରେ ମଝିରେ ସତର୍କତାର ସହିତ ଟର୍ଚ୍ଚ ଜାଳି ଛାୟାମୂର୍ତ୍ତି ଦୁଇଟି ଆଗ ପଛ ହୋଇ ଆଗେଇ ଥାନ୍ତି । ଖୁବ୍ ସତର୍କତା ସହିତ ଚାଲି ଚାଲି ସେମାନେ ସହର ଉପକଣ୍ଠ ପାର ହୋଇ ମେରାଇନ୍ ଡ୍ରାଇଭ୍ ରାସ୍ତା ଧରିଲେ । ରାସ୍ତାଟି ନିକାଞ୍ଚନ । ଛାୟାମୂର୍ତ୍ତି ଦୁଇଟି ଆଗେଇ ଚାଲିଥାନ୍ତି ।

ଛଅ କଲୋମିଟର ରାସ୍ତା ଗଲାପରେ ସେମାନେ ମେନ୍ ରାସ୍ତା ଛାଡ଼ି ଝାଉଁ ଜଙ୍ଗଲ ଭିତରକୁ ଓହ୍ଲାଇଲେ ।

ରାସ୍ତାରୁ ଓହ୍ଲାଇଲା ପରେ ସେମାନେ ଆହୁରି ସତର୍କ ହୋଇ-ଉଠିଥିଲେ । ନିଜ ହାତ ମୁଠାରେ ଏଇଟ୍. ଏମ୍. ଏମ୍ ଗୁଳିଭରା ପିସ୍ତଲ । କାହା ମୁହଁରେ କଥା ନଥାଏ, ଯେପରି ଦୁଇଜଣଙ୍କ ଲକ୍ଷ୍ୟ ଗୋଟିଏ ।

ଖୁବ୍ ସତର୍କତାର ସହିତ ଗୁପ୍ତ ମୂର୍ତ୍ତି ଦୁଇଟି ସେଇ ପୁରୁଣା କୋଠାଘର ପାଖେ ପହଞ୍ଚିଥିଲେ । କୋଠାଘରର ଚାରିପଟ କଟିକଟି ଅନ୍ଧାର । ମୁହଁକୁ ମୁହଁ ଦିଶୁନଥାଏ । ସାମ୍ନାପଟେ ଲୁହାର ଜାଲି-ବାଡ଼ । ତଳଘରେ ଚେମିଣୀଙ୍କ ଚିଇଁ ଚିଇଁ ଶବ୍ଦ । ଉପର ମହଲାର ସମସ୍ତ ଝରକା କବାଟ ବନ୍ଦ । ଗୁପ୍ତମୂର୍ତ୍ତି ଦ୍ୱୟ ସତର୍କତା ସହିତ ଉପର ମହଲାକୁ ଲକ୍ଷ୍ୟ କଲେ । ଉପର ମହଲାର ପୁରୁଣା ଝରକା ଫାଙ୍କବାଟେ ସ୍ୱଳ୍ପ ଆଲୋକର ଆଭାସ ।

ସତର୍କତା ସହିତ ପ୍ରଥମ ଗୁପ୍ତମୂର୍ତ୍ତିଟି କୋଠାର ପଛପଟ ଲୁହା ସିଡ଼ି ଦେଇ ଉପର ଘର ଆଡ଼େ ଉଠିଲେ । ଲୁହା ସିଡ଼ିରେ ଅଳ୍ପବାଟ ଆଗେଇଛନ୍ତି କି ନାହିଁ, ସେ ଉପର ମହଲାରେ ଚାପା କଣ୍ଠସ୍ୱର ଶୁଣିବାକୁ ପାଇଲେ ।

ହାତ ମୁଠାର ପିସ୍ତଲକୁ ଆଉଥରେ ପରୀକ୍ଷା କରିନେଇ ସେ ଆସ୍ତେ ଆସ୍ତେ ଉପରକୁ ଉଠିଲେ । ଲୁହା ସିଡ଼ି ଉପର ଭାଗରେ ପହଞ୍ଚି ଗୁପ୍ତମୂର୍ତ୍ତିଟି ଅଧା ଭଙ୍ଗା ଝରକା ପାଖେ ଠିଆ ହେଲେ । ଅନ୍ୟ ଗୁପ୍ତ-ମୂର୍ତ୍ତିଟି ତଳେ ଠିଆହୋଇ ସତର୍କତା ସହିତ ପରିବେଶ ଉପରେ ତୀକ୍ଷ୍ଣ ନଜର ରଖିଥାଏ ।

ପ୍ରଥମ ଗୁପ୍ତମୂର୍ତ୍ତି ଝରକା ପାଖକୁ ଲାଗିଯାଇ ଝରକା ଫାଙ୍କ ଦେଇ ଯାହା ଦେଖିଲେ, ସେ ତାଙ୍କ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ ।

ଭୁବନେଶ୍ୱର ସହରର ପ୍ରଖ୍ୟାତ ବ୍ୟବସାୟୀ, ଯୁବନେତା ଗୋଟିଏ ଚେୟାର ଉପରେ ବସିଥାନ୍ତି । ତାଙ୍କ ପାଖରେ ଆଉ ସାତ, ଆଠ ଜଣ ବଳିଷ୍ଠ ରୁକ୍ଷ ବ୍ୟକ୍ତି । ଗ୍ଲେଟ ଟେବୁଲ୍ ଉପରେ ଦୁଇବୋତଲ ପିଟର୍‌ସ୍କଟ୍ ହ୍ୱିସ୍କି ।" ଗ୍ଲାସରେ ମଦ ଢାଳି ଦୁଇଜଣ ସ୍ୱଳ୍ପ ବସ୍ତ୍ର ପରିହିତା ଯୁବତୀ ଜଣ ଜଣଙ୍କ ହାତକୁ ବଢ଼ାଇ ଦେଉଥାନ୍ତି । ଯୁବନେତାଜଣକ ଡନ୍‌ହିଲ୍ ସିଗାରେଟ୍ ପ୍ୟାକେଟ୍‌ରୁ ସିଗାରେଟ୍ ବାହାର କଲବେଳେ ପାଖରେ ବସିଥିବା ସୁନ୍ଦରୀ ଯୁବତୀଙ୍କ ମଧ୍ୟରୁ ଜଣେ ଲାଇଟର୍ ମାରି ତାଙ୍କ ସିଗାରେଟ୍ ଲଗାଇଦେଲେ । ଆଗରେ ଦୁଇଟି ଦୁଇନଳୀଆ ବନ୍ଧୁକ । ଯୁବନେତାଙ୍କ ହାତରେ ପଏଣ୍ଟ୍ ଥ୍ରୀ ଏଇଟ୍ ରିଭଲଭର୍ । ମଦ, ମାଂସ ଆଉ ସୁନ୍ଦରୀ ଯୁବତୀଙ୍କ ଗହଣରେ ସେଇ ନିର୍ଜ୍ଜନ କୋଠରୀର ପରିବେଶ ବେଶ୍ ସରଗରମ ହୋଇ ଉଠୁଥାଏ । ଛାୟାମୂର୍ତ୍ତିଟି ଝରକାଫାଙ୍କରୁ ସବୁ ଦେଖୁଥାଏ ।

ଛାୟା ମୂର୍ତ୍ତିଟି ପକେଟ୍ ମଧ୍ୟରୁ ତାଙ୍କର ପାଓ୍ୱାର୍‌ଫୁଲ୍ "ଟେଲିକ୍ୟାମେରା" ବାହାର କଲେ । ଏଇ କ୍ୟାମେରାରେ ବିନା ଲାଇଟ୍‌ରେ ମଧ୍ୟ ରାତିରେ ଫଟୋ ଉଠାଯାଇ ପାରେ । ପୁଣି ଗ୍ଲେଟ ଟେପ୍‌ରେକର୍ଡ଼ର ମଧ୍ୟ ବାହାର କଲେ । ସତର୍କତାର ସହିତ ଝରକା ଫାଙ୍କ ଦେଇ କ୍ୟାମେରା ସାହାଯ୍ୟରେ ସମସ୍ତଙ୍କ ଫଟୋ ନେଲେ ଏବଂ ପକେଟ୍ ଟେପ୍‌ରେକର୍ଡ଼ର ବାହାର କରି ସେମାନଙ୍କ କଥାବାର୍ତ୍ତାକୁ ରେକର୍ଡ଼ିଂ କରିନେଲେ ।

ସମବେତ ଦୁର୍ଦ୍ଧର୍ଷ ଦଳଟିକୁ ଯୁବନେତା ଜଣଙ୍କ ନିର୍ଦ୍ଦେଶ ଦେଉଥିଲେ, ତା'ପରଦିନ ସହରର ଆଉ ଜଣେ ପ୍ରସିଦ୍ଧ ବ୍ୟବସାୟୀଙ୍କ ଘର ଡକାୟତି କରିବେ । ଯୁବନେତା ଜଣଙ୍କ ବ୍ୟବସାୟୀଙ୍କ ବ୍ୟବସାୟ କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱୀ । ଆସ୍ତେ ଆସ୍ତେ ଦଳଟାଯାକର ଲୋକ ମଦ, ମାଂସ ଭକ୍ଷଣ କରି ଉନ୍ମତ୍ତ ହୋଇ ଉଠିଲେ । ଯୁବତୀ ଦୁଇଜଣ ଦଳପତିଙ୍କ ନିକଟରେ ଲାଗି ବସିଥାନ୍ତି ।

ଛାୟାମୂର୍ତ୍ତିଟି କିଛିକ୍ଷଣ ସେମାନଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟକଲା

ଘରେ ଲୁହା ସିଡ଼ି ଦେଇ ତଳକୁ ଓହ୍ଲାଇ ଆସିଲେ । ଆଗରୁ ଅପେକ୍ଷା କରିଥିବା ଗୁପ୍ତାମୂର୍ତ୍ତିଟି ସଙ୍ଗେ ସେଇ ଅନ୍ଧକାର ମଧ୍ୟରେ ଲୁଚିଗଲେ ।

( ଗ୍ୟାରି )

ପରଦିନ ସହର ଉପକଣ୍ଠ ମଙ୍ଗଳା ଦେବୀ ମନ୍ଦିରରେ ଭିଡ଼ । ସାଧାରଣ ଭାବେ ସନ୍ଧ୍ୟା ବେଳକୁ ଏଠାରେ ଭକ୍ତମାନଙ୍କର ଭିଡ଼ ହୁଏ ମାତ୍ର ସବୁ ସମୟରେ ନୁହେଁ । ସେଦିନ ଗୋଟିଏ ଦଳ ଠାକୁରାଣୀ ମନ୍ଦିର-ରେ ପୂଜା ଅର୍ଚ୍ଚନା କରୁଥାନ୍ତି । ପୂଜାରୀ ମନ୍ଦିର ମଧ୍ୟରେ ଦେବୀଙ୍କୁ ବେଶ କରାଉଥାଏ । ମନ୍ଦିର ଭିତରେ ଜଣେ ହିନ୍ଦୁସ୍ଥାନୀ ସାଧୁ ଅର୍ଦ୍ଧ ମୁଦ୍ରିତ ଆଖିରେ ଧ୍ୟାନମଗ୍ନ ଥାଆନ୍ତି । ପୂଜକ ଜାଣନ୍ତି, ବେଳେବେଳେ ଏଇପରି କେତେକ ସାଧୁସନ୍ଥ, ଜଗନ୍ନାଥ ଦର୍ଶନ କରିଯିବା ବାଟରେ ମଙ୍ଗଳାଙ୍କ ପାଖରେ ପ୍ରାର୍ଥନା କରନ୍ତି ।

ସାଧୁବାବା ଜଣକ ତାନ୍ତ୍ରିକ ପରି ଜଣାପଡୁଥିଲେ । ଗେରୁଆ ବସ୍ତ୍ର, ବେକରେ ରୁଦ୍ରାକ୍ଷ, ମୁଣ୍ଡରେ ରକ୍ତ ଚନ୍ଦନ ଟୀକା । ଏକାଗ୍ର ଚିତ୍ତରେ ଧ୍ୟାନମଗ୍ନ । ମୁହଁରେ ଲମ୍ବା ଲମ୍ବା ଦାଢ଼ି ।

ପ୍ରାୟ ସନ୍ଧ୍ୟା ଛଅଟା ବେଳକୁ, ଗୋଟିଏ ଆମ୍ବାସାଡ଼ାର ଗାଡ଼ି ଦେବୀ ମନ୍ଦିର ପାଖ ରାସ୍ତା କଡ଼ରେ ଠିଆ ହେଲା । ଗାଡ଼ିରେ ଆଠ ଜଣ ଲୋକ ଥିଲେ । ସମସ୍ତେ ଯୁବକ । ଓଡ଼ିଆ, ହିନ୍ଦି, ଇଂରାଜି ଭାଷାରେ କଥାବାର୍ତ୍ତା କରୁଥିଲେ । ସେମାନେ କଥାବାର୍ତ୍ତା ହୋଇ ଗାଡ଼ି ଭିତରୁ ଓହ୍ଲାଇ ପଡ଼ିଲେ । ସାଙ୍ଗରେ ଭୋଗ, ଫୁଲମାଳ, ଧୂପ ଓ ଦୀପ । ମନ୍ଦିରରେ ପ୍ରବେଶ କରି ସେମାନେ ପୂଜକଙ୍କୁ ନିର୍ଦ୍ଦେଶ ଦେଲେ ଠାକୁରାଣୀଙ୍କୁ ଭଲଭାବେ ପୂଜା ଅର୍ଚ୍ଚନା କରିବା ପାଇଁ ।

ସେମାନଙ୍କ ମଧ୍ୟରୁ ଜଣେ ପକେଟ୍‌ରୁ ୫୦ ଟଙ୍କିଆ ନୋଟ୍

ବାହାର କରି ପୂଜକଙ୍କ ହାତରେ ଧରାଇଦେଲେ । ଏକକାଳୀନ ପଚିଶ ଟଙ୍କା ପାଇ ପୂଜକ କିଛି କହିବା ପୂର୍ବରୁ, ଯୁବକ ଜଣକ କହିଲେ ଭଲଭାବେ ଠାକୁରାଣୀଙ୍କୁ ମାର୍ଜଣା କରିବା ନିମିତ୍ତ ସେ ପଚିଶ ଟଙ୍କା ଦେଇଛନ୍ତି । ଟଙ୍କାକୁ ଅଣ୍ଟାରେ ମାରି ପୂଜକ, ଆଗନ୍ତୁକ ଭକ୍ତମାନଙ୍କ ପାଇଁ ସ୍ୱତନ୍ତ୍ର ପୂଜା ଅର୍ଚ୍ଚନାର ବନ୍ଦୋବସ୍ତ କଲେ ।

ଆଗନ୍ତୁକମାନଙ୍କ ଭିତରୁ କେତେଜଣ ମନ୍ଦିର ଭିତରେ ଓ ଆଉ କେତେଜଣ ମନ୍ଦିର ବାହାରେ ବୁଲୁଥାନ୍ତି । ଠାକୁରାଣୀଙ୍କ ପାଖେ ଭୋଗ ସରିଲାପରେ ସେମାନେ ତାଙ୍କର ଗନ୍ତବ୍ୟ ପଥରେ ଯିବା ଉଦ୍ଦେଶ୍ୟରେ ଅତ୍ୟନ୍ତ ବ୍ୟଗ୍ର ଥିବାର ଜଣା ପଡ଼ୁଥିଲେ । ମନ୍ଦିର ଭିତରେ ଧ୍ୟାନରତ ହିନ୍ଦୁସ୍ଥାନୀ ସାଧୁଙ୍କ ମୁହଁରେ ପରିବର୍ତ୍ତନ ଦେଖାଦେଲା । ସେ ଭଲଭାବେ ଆଗନ୍ତୁକମାନଙ୍କ ଉପରେ ଆଖି ବୁଲାଇ ଲକ୍ଷ୍ୟକରି ନେଲେ । ଆଗନ୍ତୁକ-ମାନଙ୍କ ପୂଜା ଅର୍ଚ୍ଚନା ଚାଲୁଥିବା ବେଳେ ସାଧୁବାବା ବାହାରକୁ ଉଠିଲେ । କିଛି ସମୟପାଇଁ ବାହାରକୁ ଯାଇ ପୁଣି ମନ୍ଦିର ଭିତରକୁ ମାଳା ଗଡ଼ାଇ ଗଡ଼ାଇ ଫେରି ଆସିଲେ ।

ଆଗନ୍ତୁକ ଯୁବକମାନେ ସେମାନଙ୍କ ପୂଜା ସାରିଲାପରେ ଭୋଗ, ଫୁଲମାଳ ଧରି ଗାଡ଼ି ପାଖକୁ ଫେରିଯାଉଥିଲେ । ସମସ୍ତେ ଗାଡ଼ିରେ ବସିଲା ପରେ ଚାଳକକୁ ଗାଡ଼ି ଚଳେଇବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ଗାଡ଼ିଚାଳକ ଗାଡ଼ି ଚଳେଇବା ପୂର୍ବରୁ, ସାଧୁବାବା ଜଣକ ଗାଡ଼ି ସାମ୍ନାକୁ ଆସି ଯାଇଥିଲେ ।

ଗାଡ଼ିରେ ବସିଥିବା ଯୁବକମାନଙ୍କ ଭିତରୁ ଜଣେ ଅତ୍ୟନ୍ତ କର୍କଶ ସ୍ୱରରେ ରାସ୍ତା ଛାଡ଼ିବାପାଇଁ ସାଧୁଙ୍କୁ ନିର୍ଦ୍ଦେଶ ଦେଲା··· । ସେମାନଙ୍କ ଭିତରୁ ଆଉ ଜଣେ ଦଶଟଙ୍କିଆ ନୋଟ୍ ଖଣ୍ଡେ ବାହାର କରି ସାଧୁବାବାଙ୍କ ଆଡ଼େ ବଢ଼ାଇ ଦେଲା । ମାତ୍ର ଏ କଅଣ ? ଟଙ୍କା ଗ୍ରହଣ କରିବା ପରିବର୍ତ୍ତେ ସାଧୁବାବାଙ୍କ ହାତର ଗୁଳିଭରା ପିସ୍ତଲ ଡ୍ରାଇଭର ମୁଣ୍ଡପାଖେ ଲାଗିଗଲା । ଡ୍ରାଇଭର ଭୟରେ ଗାଡ଼ି ଷ୍ଟାର୍ଟ ବନ୍ଦ୍ କରିବା ପୂର୍ବରୁ, ପଞ୍ଚେ ଯୁବକ ପେଡ଼ିମାନେ କ ଆଗରୁ ମନ୍ଦିର ପାଖେ

କଦଳୀ ଏବଂ ଆଇସ୍‌କ୍ରୀମ୍ ବିକୁଥିଲେ ସେମାନେ ଆସି ଗାଡ଼ିର ଦୁଇଟି କବାଟ ପାଖେ ପହଞ୍ଚି ଯାଇଥାନ୍ତି । ସେମାନଙ୍କ ହାତରେ ଗୁଳିଭର୍ତ୍ତି ପିସ୍ତଲ ।

ହଠାତ୍ ଏପରି ଏକ ପରିସ୍ଥିତି ହେବା ଯୋଗୁଁ ମନ୍ଦିରର ପୂଜକସହ ବହୁଲୋକ ଗାଡ଼ିପାଖେ ପହଞ୍ଚିଗଲେ । ଗାଡ଼ିଭିତରେ ବସିଥିବା ଆଗନ୍ତୁକ ଯୁବକମାନେ ପାଟି କରୁଥାନ୍ତି । ସେମାନେ ଭଦ୍ରଲୋକ, ଜଗନ୍ନାଥ ଦର୍ଶନରେ ଯାଉଛନ୍ତି, ତାଙ୍କୁ ଏପରି ଗୁଣ୍ଡାଶ୍ରେଣୀର ଲୋକ ଅଟକାଇଛନ୍ତି । ସାଧୁବାବାଙ୍କ ନିର୍ଦ୍ଦେଶରେ ପିସ୍ତଲ ଦେଖାଇ ତାଙ୍କ ଧନସମ୍ପତ୍ତି ଲୁଟି ନେବାକୁ ବସିଛନ୍ତି ।

ମନ୍ଦିରର ପୂଜକ ଏବଂ ପାଖ ଦୋକାନୀମାନେ ସାଧୁବାବା ଏବଂ ତାଙ୍କ ଦଳ ଲୋକମାନଙ୍କ ବ୍ୟବହାରରେ କ୍ଷୁବ୍ଧ ହୋଇ ସେମାନଙ୍କୁ ମାରଧର କରିବାକୁ ପ୍ରସ୍ତୁତ ହୋଇଗଲେ । ଏଇ ସୁଯୋଗରେ ଗାଡ଼ି ମଧ୍ୟରେ ବସିଥିବା ଯୁବକମାନେ ବାହାରକୁ ଆସିବାକୁ ଚେଷ୍ଟା କଲାବେଳେ ପାଖରେ ଠିଆ ହୋଇଥିବା ଯୁବକମାନେ ତାଙ୍କୁ ବାହାରକୁ ବାହାରିବାର ସୁଯୋଗ ଦେଉନଥାନ୍ତି । ଆସ୍ତେ ଆସ୍ତେ ଲୋକ ଗହଳି ବଢ଼ିବାକୁ ଲାଗିଲା ।

ଏଇ ସମୟରେ ସାଧୁବାବା ତାଙ୍କ ଝୁଲିବ୍ୟାଗ୍ ଭିତରୁ ଗୋଟେ ମ୍ୟାନ୍‌ପାକ୍ ବେତାରଯନ୍ତ୍ର ବାହାର କରି ଡି. ଏସ୍. ପି. ମିଃ ମହାନ୍ତିଙ୍କୁ ଶୀଘ୍ର ମନ୍ଦିର ପାଖକୁ ଆସିବାକୁ ନିର୍ଦ୍ଦେଶ ଦେଲେ ।

ମିନିଟ୍‌କ ଭିତରେ ପୁଲିସ୍ ପାଟ୍ରୋଲିଂ ଜିପ୍ ଡି. ଏସ୍. ପି. ମିଃ. ମହାନ୍ତି ଏବଂ ସଦର ଥାନା ବାବୁଙ୍କୁ ଧରି ଜାଗା ଉପରେ ପହଞ୍ଚିଗଲେ । ପୁଲିସ୍ ଜିପ୍ ଦେଖି ଜମା ହୋଇଥିବା ଲୋକମାନେ ଭୟରେ ରାସ୍ତା ଉପର ଛାଡ଼ି ଦେଇ ଅଳ୍ପ ଦୂରକୁ ଯାଇ ଘଟଣା କଅଣ ବୁଝିବାକୁ ଠିଆ ହୋଇଥାନ୍ତି । ଆମ୍ବାସାଡ଼ର ଗାଡ଼ି ଆଗରେ ପୁଲିସ୍ ଜିପ୍ ରହିଲାପରେ, ଡି. ଏସ୍. ପି. ମିଃ. ମହାନ୍ତି ଗାଡ଼ିରୁ ଓହ୍ଲାଇ ହିନ୍ଦୁସ୍ବାମୀ ସାଧୁ-

ବାବାଙ୍କୁ ସାଲ୍ୟୁଟ୍ କଲେ । ଦେଖଣାହାରିମାନେ ଘଟଣା କିଛି ବୁଝିପାରୁ ନଥାନ୍ତି ।

ସମସ୍ତେ ଏକଲୟରେ ଗୃହିଁଥାନ୍ତି, ଘଟଣା କଅଣ ହେବାକୁ ଯାଉଛି । ଦେଖଣାହାରି ମାନଙ୍କ ସନ୍ଦେହ ଦୂର କରିବାପାଇଁ ହନୂମ୍ବାମୀ ସାଧୁ ତାଙ୍କ ମୁହଁରୁ ନକଲିଦାଢ଼ୀ ଖୋଲିଦେଲେ ।

ଦାଢ଼ୀ ଖୋଲି ଦେଲାପରେ, ଦେଖଣାହାରି ମାନଙ୍କ ଭିତରେ ଗୁଞ୍ଜରଣ ଖେଳିଗଲା । ଆରେ; ଏ ତ ମି. ମହାପାତ୍ର, ଏସ୍. ପି. ସାହେବ ।

ଦେଖଣାହାରି ମାନଙ୍କ ଆଗରେ ଏସ୍. ପି. ମିଃ. ମହାପାତ୍ର କହିଲେ, ଯେଉଁମାନେ ଏଇ ଆମ୍ବାସାଡ଼ାର ଗାଡ଼ିରେ ବସିଛନ୍ତି ସେମାନେ ଭଦ୍ରଲୋକ ନୁହନ୍ତି, ଏମାନେ ସମସ୍ତେ ଆନ୍ତଃରାଜ୍ୟ ଡାକୁଦଳ । ଲୋକ-ମାନଙ୍କ ଉତ୍କଣ୍ଠା ବଢ଼ିବାକୁ ଲଗିଲା ।

ଆମ୍ବାସାଡ଼ାର ଗାଡ଼ିରୁ ଜଣକ ପରେ ଜଣକୁ ବାହାର କରାଗଲା । ଡାକୁଦଳଙ୍କ ପାଖରୁ ରେଭିଲ୍ ପିସ୍ତଲ, ବନ୍ଧୁକ, ବୋମା ଓ ଆଉ ସରଞ୍ଜାମ ସମସ୍ତଙ୍କ ସାମ୍ନାରେ ପୁଲିସ୍ ଜବତକଲେ ।

ମିଃ. ମହାପାତ୍ର ଡାକୁଦଳଙ୍କ ହାତରେ ହାତକଡ଼ି ଲଗେଇ ପୁଲିସ୍ ଗାଡ଼ିରେ ବସାଇଲା ବେଳେ କହିଥିଲେ ଯେ, ଏଇଦଳ ଓଡ଼ିଶାର ଆଠଟି ଜିଲ୍ଲାରେ ପ୍ରାୟ ୩୦ରୁ ଊର୍ଦ୍ଧ୍ୱ ଡକାୟତି ମକଦ୍ଦମାରେ ଜଡ଼ିତ ଅଛନ୍ତି । ଏମାନଙ୍କ ବିଷୟରେ ଆହୁରି ଖବର ଆପଣ ପରେ ଜାଣି-ପାରିବେ ।



## ଚୌଧୁରୀ ହତ୍ୟାକାଣ୍ଡ

୧୯୮୧ ମସିହା ଫେବୃୟାରୀ ମାସ ତିନ ତାରିଖର ସକାଳ । ଫଗୁଣମାସର ପାହାନ୍ତି ଜାଡଟା ଖୁବ୍ ଜୋର୍‌ରେ ଜମି ଥାଏ । ପ୍ରାୟ ଭୋର ପାଞ୍ଚଟା ବେଳକୁ ବେଡ୍‌ରୁମ୍‌ର ଟେଲିଫୋନ୍‌ଟା କ୍ରିଂ-କ୍ରିଂ ହୋଇ ବାଜି ଉଠିଲା । ଏତେ ସକାଳୁ ଟେଲିଫୋନ୍ ଆସିଲେ ପ୍ରମାଦ ଗଣିବା କଥା । ସେପରି ଗୋଟେ ବଡ ଧରଣର ଘଟଣା ନ ଘଟିଥିଲେ, ଏବେ ସକାଳୁ କେହି ଏସ୍. ପି. ସାହେବଙ୍କୁ ଡିଷ୍ଟର୍ବ କରିବାକୁ ଚାହିଁବେନି । ମଶାରୀ ଭିତରୁ ହାତ ବଢ଼ାଇ ଟେଲିଫୋନ୍‌ର ରିସିଭରଟା ଧରିଲାବେଳକୁ ସେପଟୁ ଶୁଣାଗଲା, "ମୁଁ ମିଃ. ପ୍ରଧାନ କହୁଛି, ଟିକଏ ଜରୁରୀ ବ୍ୟକ୍ତିଗତ କଥାଥିଲା, ସଙ୍ଗେ ସଙ୍ଗେ ଆସୁଛି ।" ମୁଁ କିଛି କହିବା ପୂର୍ବରୁ ସେ ଟେଲିଫୋନ୍ ଛାଡ଼ିଦେଲେ ।

ମୁହଁହାତ ଧୋଇ ଗାଧୁଆ ଘରୁ ବାହାରିଲା ବେଳକୁ ଗେଟ୍ ଖୋଲି ମିଃ. ପ୍ରଧାନଙ୍କ ଗାଡ଼ି ପୋର୍ଟିକୋ ଆଡ଼କୁ ଆସୁଥାଏ । ମୁଁ ଡ୍ରଇଂ-ରୁମ୍ କବାଟ ଖୋଲିଲାବେଳକୁ ସେ ଆସି ଦୁଆରମୁହଁରେ ଠିଆ-ହେଲେ । ବିଶେଷ ଭାବେ ଚିନ୍ତିତ ଥିଲେ ମିଃ. ପ୍ରଧାନ । ଫଗୁଣ ସକାଳରେ ମଧ୍ୟ ତାଙ୍କ ମୁହଁ ଉପରେ ବିନ୍ଦୁ ବିନ୍ଦୁ ଝାଳ । ମୁଁ କିଛି କହିବା ପୂର୍ବରୁ ସଂକ୍ଷେପରେ ସେ କହିଲେ ଯେ, ତାଙ୍କ ଉଠା-ଜଳସେଚନ ବିଭାଗର ଇଞ୍ଜିନିୟର ମିଃ. ଚଉଧୁରୀଙ୍କ ପତ୍ନୀ ଗତ କାଲି ଦିନ ଗୋଟାକ ଠାରୁ ତାଙ୍କ ଛ' ନମ୍ବର ଇଉନିଟ୍ ସରକାରୀ ବାସଭବନରୁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି ।

ଡେରି ନକରି ମୁଁ ସଙ୍ଗେ ସଙ୍ଗେ ଗାଡ଼ି ଧରି ବାହାରି ପଡ଼ିଲି । ମିଃ. ପ୍ରଧାନ ତାଙ୍କ ଗାଡ଼ି ଷ୍ଟାର୍ଟ ଦେଇ ମୋ ସଙ୍ଗେ ଆସିଲେ । ଦୁହେଁ ଯାଇ ଛ’ ନମ୍ବର ଇଉନିଟ୍‌ରେ ଇଞ୍ଜିନିୟର ଚଉଧୁରୀଙ୍କ ଘରେ ପହଞ୍ଚିଲା-ବେଳକୁ ପ୍ରାୟ ୫ ଟା’ ୪୦ ମିନିଟ୍ । ଚଉଧୁରୀ ସାହେବଙ୍କର ଗୋଟିଏ ଝିଅ ଆଉ ଗୋଟିଏ ପୁଅ । ପୁଅଟି କଲେଜରେ ପଢୁଥାଏ ଆଉ ଝିଅଟି କନ୍‌ଭେଣ୍ଟ ସ୍କୁଲରେ । ଆମେ ପହଞ୍ଚିଲାବେଳକୁ ଇଞ୍ଜିନିୟରଙ୍କ ପାଖ ପଡ଼ୋଶୀ କେତେଜଣ ତାଙ୍କ ଦାଣ୍ଡ ସାମ୍ନାରେ ଠିଆ ହୋଇଥାନ୍ତି । ପିଲା ଦୁଇଟି ବାହାରେ ବସି କାନ୍ଦୁଥାନ୍ତି । ବାକି କେତେଜଣ ଦେଖଣାହାରୀ ବଗିଚା ବାଡ଼ପାଖେ ଠିଆହୋଇ ଘଟଣା କଅଣ ବୁଝିବାକୁ ଚାହିଁ ରହି-ଥାନ୍ତି । ସମସ୍ତଙ୍କ ମୁହଁରେ ସନ୍ଦେହର ଛାପ । କାହାରି ମୁହଁରେ କଥା ନଥାଏ । ଦୁଇଟି ପିଲାର ମା’ ମିସେସ୍ ଚଉଧୁରୀ ହଠାତ୍ ଏପରି କମିତି ଉଭେଇଗଲେ । ପୁଣି ଦିନ ଗୋଟାଏ ବେଳେ । ସନ୍ଦେହ··· ସନ୍ଦେହ··· ସବୁଆଡ଼େ ଯେପରି ସନ୍ଦେହର କୁହେଳିକା ମିଃ. ଚଉଧୁରୀଙ୍କ ଘରକୁ ଆଚ୍ଛାଦିତ କରି ରଖିଛି । ମୁଁ ଇଞ୍ଜିନିୟରଙ୍କ ଡ୍ରଇଂ ରୁମ୍‌ରେ ପହଞ୍ଚିଲା ପରେ ଜଣେ ବୟସ୍କ ଭଦ୍ରବ୍ୟକ୍ତି ମିଃ. ମହାପାତ୍ର ଯେ କି ମିସେସ୍ ଚଉ-ଧୁରୀଙ୍କ ମାମୁଁ ହୁଅନ୍ତି, ସେ ଅତ୍ୟନ୍ତ ସନ୍ତର୍ପଣରେ କହିଲେ ଯେ, ମିସେସ୍ ଚଉଧୁରୀ ପ୍ରତିଦିନ ସକାଳ ନ’ଟାରେ ପୁଅଝିଅଙ୍କୁ ସ୍କୁଲ, କଲେଜକୁ ପଠାଇଦେଲା ପରେ ଘରେ ଦୁଇଜଣ ଅର୍ଦ୍ଦଳିଙ୍କ ସଙ୍ଗେ ଥିଲେ । ଘର କାମ ଦାମ ସାରି ଦିନ ୧୨ଟା ବେଳକୁ ଝିଅ ପାଇଁ ଟିଫିନ୍ ତିଆରି କରି, ଜଣେ ଅର୍ଦ୍ଦଳି ହାତରେ ଟିଫିନ୍ କନ୍‌ଭେଣ୍ଟ ସ୍କୁଲ୍‌କୁ ପଠାଇଥିଲେ । ସେ ଅର୍ଦ୍ଦଳିଟି ଟିଫିନ୍ ନେଇ ଗଲାପରେ, ଘରେ ମିସେସ୍ ଚଉଧୁରୀ ଆଉ ଚାକରାଣୀ କାମ କରୁଥିବା କାହ୍ନୁ ବାରିକ ଥିଲେ । ସବୁଦିନ ପ୍ରାୟ ଘରେ ଏହିପରି କାମ ପଡ଼େ । ଦିନ ୧ଟା ବେଳକୁ ସେ (ମିଃ. ମହାପାତ୍ର) ପୁରୁଣା ଭୁବନେଶ୍ୱରରୁ ତାଙ୍କ ଘରକୁ ଆସିଥିଲେ । ସେତେବେଳେ କାହ୍ନୁ ଏକା ଘରେ ଥାଏ । ତାଙ୍କୁ ଦେଖି, କାହ୍ନୁ କହିଲା ଯେ, ମା’ ଗୋଟେ ଧଳା ଆମ୍ବାସଡ଼ର କାର୍‌ରେ ବସି ବଜାର ଆଡ଼େ ଯାଇଛନ୍ତି । ଅଳ୍ପ ସମୟପରେ ଫେରିବେ ବୋଲି କହି ଯାଇଛନ୍ତି । କାହ୍ନୁ ଠାରୁ ଏତକ ଶୁଣିଲା ପରେ ସେ ତାଙ୍କ ଘରକୁ ଫେରିଗଲେ ।

ସବୁଦିନ ପରି ଦିନ ୪ଟା ବେଳେ ପିଲମାନେ ସ୍କୁଲ, କଲେଜରୁ ଫେରି ମା'ଙ୍କୁ ଖୋଜିଲେ । କାହ୍ନୁର ସେଇ କଥା, "ମା ବଜାରକୁ କାହା ଧଳା ଆମ୍ବାସାଡ଼ର ଗାଡ଼ିରେ ଯାଇଛନ୍ତି ।" ପିଲମାନେ ତାଙ୍କ ମା'ଙ୍କୁ ଭଲ ଭାବେ ଜାଣନ୍ତି । ତାଙ୍କ ସ୍କୁଲ ଫେରିଲା ବେଳ ହେଲେ, ମା ଯେଉଁଠି ଥିଲେ ବି ଘରକୁ ଫେରନ୍ତି । କାହ୍ନୁ କଥାରେ ସେମାନଙ୍କର ସନ୍ଦେହ ହେଲା । ଦୁହେଁଯାକ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ ପଚାରିଲେ, ମାତ୍ର କାହ୍ନୁର ଗୋଟିଏ ଉତ୍ତର—"ଧଳା ଆମ୍ବାସାଡ଼ର ଗାଡ଼ିରେ ମା' କାହା ସଙ୍ଗେ ଯାଇଛନ୍ତି ।" ପିଲମାନେ ଅପେକ୍ଷା କଲେ । ରାତି ଆଠ, ନଅ, ମାତ୍ର ମା'ଙ୍କ ଦେଖାନାହିଁ । ସେମାନେ ତାଙ୍କ ଅଜାଙ୍କ ପାଖକୁ ଫୋନ୍ କଲେ । ପୁରୁଣା ଭୁବନେଶ୍ୱରରୁ ଅଜାଆଈ ଦୁହେଁଯାକ ଗାଡ଼ି ଧରି ପହଞ୍ଚିଲେ । ସେ ପର୍ଯ୍ୟନ୍ତ ମା' ଫେରିନଥାନ୍ତି ।

କାହ୍ନୁକୁ ଯେତେ ପଚାରିଲେ ସେ କେବଳ ଗୋଟିଏ କଥା କହୁଥାଏ—"ଧଳା ଆମ୍ବାସାଡ଼ର ଗାଡ଼ି" ।

ରାତି ପ୍ରାୟ ୧୧ ବେଳକୁ ମିଃ ମହାପାତ୍ର କ୍ୟାପିଟାଲ ପୋଲିସ୍ ଥାନାକୁ ଫୋନ୍ କରିବାକୁ ମନସ୍ଥକରି ଟେଲିଫୋନ୍ ଉଠାଇଲେ । ସେଇ ସମୟରେ କାହ୍ନୁ ତାଙ୍କ ପାଇଁ ଟ୍ରେ' କରି ରୋଷେଇ ଘରୁ ଡ୍ରଇଂ ରୁମ୍‌କୁ ଆସୁଥାଏ । ମିଃ ମହାପାତ୍ରଙ୍କୁ ପୋଲିସ୍ ଷ୍ଟେସନକୁ ଖବର ଦେବା ଶୁଣି, କାହ୍ନୁ ଟ୍ରେ' କପ୍‌କୁ ଥୋଇ ଦେଇ ଘରର ପଛପଟ କାନ୍ଥ ଡେଇଁ ଫେରାର୍ ହୋଇଗଲା । କାହ୍ନୁର ହଠାତ୍ ଫେରାର୍ ହୋଇଯିବା ଦେଖି ମିଃ ମହାପାତ୍ରଙ୍କ ମନରେ ସନ୍ଦେହ ଘନୀଭୂତ ହେଲା । ସେ ଭାବିଲେ ମିସେସ୍ ଚଉଧୁରୀଙ୍କ ଅନ୍ତର୍ଦ୍ଧାନରେ କାହ୍ନୁର ହାତ ଅଛି । ସେ ନିଶ୍ଚୟ ଧଳା ଆମ୍ବାସାଡ଼ର କାର୍‌ରେ ଆସିଥିବା ବ୍ୟକ୍ତିକୁ ଜାଣେ, ନହେଲେ ପୁଲିସ୍ ନାଁ ଶୁଣୁଶୁଣୁ ସେ କାହିଁକି ଘରରୁ ଫେରାର୍ ହୋଇଗଲା ।

ଟେଲିଫୋନ୍ ପାଇ କ୍ୟାପିଟାଲ ପୁଲିସ୍ ଷ୍ଟେସନର ସବ୍‌ଇନସ୍‌ପେକ୍ଟର ମିଃ ପାଣିଗ୍ରାହୀ ତାଙ୍କ ବୁଲେଟ୍ ମଟରସାଇକେଲରେ ଜଣେ ଏ. ଏସ୍. ଆଇ.ଙ୍କୁ ଧରି ସଙ୍ଗେ ସଙ୍ଗେ ପହଞ୍ଚିଗଲେ । ଦିନ ଗୋଟାକ

ବେଳେ ମିସେସ୍ ଚଉଧୁରୀଙ୍କ ଧଳା ଅମ୍ବାସାଡ଼ର ଗାଡ଼ିରେ ଅନ୍ତର୍ଦ୍ଧାନ ଏବଂ ରାତି ୧୧ଟା ବେଳେ ଏ ସମସ୍ତ ଘଟଣା ଦେଖିଥିବା ଘରର ପୂଜାରୀ କାହ୍ନୁ ବାରିକର ଫେରାର ସମସ୍ତ ଘଟଣାଟିକୁ ତଦନ୍ତକାରୀ ପୁଲିସ୍ ଆଗରେ ଆହୁରି ଜଟିଳ କରିଦେଲା ।

ଘଟଣାଟି ଶୁଣିଲା ପରେ ମୋ ମନରେ ଅଲଗା ପ୍ରକାର ଶଙ୍କା ସୃଷ୍ଟି ହେଲା ।

ଦୁଇ ତାରିଖ ଦିନ ୧୨ଟା ପର୍ଯ୍ୟନ୍ତ ମିସେସ୍ ଚଉଧୁରୀ ଘରେ ଥିଲେ ଏବଂ ପିଲାମାନଙ୍କ ପାଇଁ ଟିଫିନ୍ ପଠାଇଥିଲେ, ଏଥିରେ କିଛି ସନ୍ଦେହ ନଥିଲା । ଦିନ ୧ଟା ବେଳେ ମିଃ ମହାପାତ୍ର ତାଙ୍କ ଘରକୁ ଆସିଥିଲେ, ସେତେବେଳେ କାହ୍ନୁ ମିସେସ୍ ଚଉଧୁରୀ ଧଳା ଆମ୍ବାସାଡ଼ର କାର୍‌ରେ ବଜାରକୁ ଯାଇଛନ୍ତି ବୋଲି କହିଥିଲା । ଏତିକି କଥାରୁ ଜାଣି-ବାକୁ ମିଳିଲା ଯେ, ଦିନ ୧୨ଟାରୁ ୧ଟା ମଧ୍ୟରେ ସେ କେଉଁଆଡ଼େ ଯାଇ-ଛନ୍ତି । ଏ ବିଷୟରେ ପାଖ ପଡ଼ୋଶୀମାନେ ମଧ୍ୟ କିଛି କହି ପାରିଲେ ନାହିଁ କି ଏଇ ସମୟ ମଧ୍ୟରେ ଧଳା ଆମ୍ବାସାଡ଼ର ଗାଡ଼ି ଆସିବା କେହି ଦେଖି ନଥିଲେ । ମନେ ମନେ ଚିନ୍ତାକରି ଭିତର ଘରକୁ ପଶିଲି । ଘରର ଜିନିଷପତ୍ର ଠିକ୍ ପୂର୍ବ ପରି ଥୁଆ ହୋଇଥାଏ । କୌଣସି ସ୍ଥାନରେ ବ୍ୟତିକ୍ରମ ଜଣାପଡ଼ୁ ନଥାଏ । ମିସେସ୍ ଚଉଧୁରୀଙ୍କ ଲୁଗା, ମନିପର୍ସ ସବୁ ଠିକ୍ ସ୍ଥାନରେ ଥାଏ । ଘର ବୁଲି ଦେଖିଲା ପରେ, ଭିତର ଅଗଣା ଦେଖିଲୁ, ପରେ ପରେ ବାଡ଼ି ବଗିଚା । ବଗିଚାରେ ବୁଲିଲାବେଳେ ଗୋଟେ ସ୍ଥାନରେ ନଗଦ ଗାଡ଼ ଖୋଳା ଜାଗାଟିଏ ଦେଖିଲୁ । ଖୋଳା ସ୍ଥାନରେ କୋଦାଳଟିଏ ମଧ୍ୟ ପଡ଼ିଥାଏ । ବୋଧେ ମାଳି ଗଛ ଲଗାଇବ ବୋଲି ଗାଡ଼ ଖୋଳିଛି ଭାବି ବଗିଚାରୁ ଫେରିଲୁ । ଘର ବାହାର କୌଣସି ଜାଗାରେ କିଛି ସନ୍ଦେହଜନକ ଜିନିଷ ମିଳିଲାନି କି ଘଟଣା ବିଷୟରେ ସୂତାଖିଅଟେ ମିଳିଲାନି । ସନ୍ଦେହରେ ମୁଁ ଘରର ଛାତ ଉପରକୁ ଯିବାକୁ ବସିଲି । ଛାତ ଉପରେ କାଳେ କିଛି ପ୍ରମାଣ ମିଳି-ପାରେ । ଭିତର ଅଗଣା କାନ୍ଥରେ ଗୋଡ଼ ଦେଇ ଛାତ ଉପରକୁ ଉଠିଲି

ବେଳକୁ ଦେଖିଲି, ଠିକ୍ କାନ୍ଥର ଅପରପଟ ନଳା ପାଖେ କଟ୍ଟା ଶୁଖିଲା କଦଳୀ ପତ୍ର ଗୋଟେ ସ୍ଥାନରେ ଜମା ହୋଇ ରହିଛି । ବଗିଚାରେ ଶୁଖିଲା କଦଳୀପତ୍ର ସବୁଆଡ଼େ ପଡ଼ିଛି, ମାତ୍ର ଗୋଟିଏ ସ୍ଥାନରେ ଏତେ ପରିମାଣରେ ପତ୍ର ଜମାଥିବା ଦେଖି ମୁଁ ହାବିଲ୍‌ଦାର ଦାସକୁ ଶୁଖିଲା ପତ୍ର ଗଦାଟିକୁ ଖେଳେଇ ଦବାକୁ କହିଲି । ହାବିଲ୍‌ଦାର ଦାସ ସଙ୍ଗେ ସଙ୍ଗେ ଲାଠିରେ ଶୁଖିଲା ପତ୍ର ଗଦାଟିକୁ ଖେଳେଇ ଦେଲା । ଆଶ୍ଚର୍ଯ୍ୟ ! ଶୁଖିଲା ପତ୍ରଗଦା ତଳୁ ଦେଖାଗଲା ମିସେସ୍ ଚଉଧୁରୀଙ୍କ ମୃତଦେହ ଗୋଟେ ବଡ଼ ପଲିଥିନ୍ ବ୍ୟାଗ୍‌ରେ ବନ୍ଧା ହୋଇ ପଡ଼ିଛି । ମୁଣ୍ଡଟି ଗଣ୍ଡିରୁ ଅଲଗା ହୋଇ ଯାଇଥାଏ । ମୃତ ମୁହଁରେ ଭୟ ଆଉ ଆଶଙ୍କାର ଚିହ୍ନ । ଆତତାୟୀ ମିସେସ୍ ଚଉଧୁରୀଙ୍କୁ ହତ୍ୟାକଲାପରେ, ପଲିଥିନ୍ ବ୍ୟାଗରେ ପୂରାଇ ବାନ୍ଧି ଦେଇଥିବା ଯୋଗୁଁ, ଦେହର ରକ୍ତ ବାହାରକୁ ବାହାରିପାରି ନଥାଏ । ତେଣୁ ସେ ଜାଗାରେ ତାଙ୍କର ମୃତଦେହ ଲୁଚାଇ କରି ରଖାଯାଇଥିଲେ ମଧ୍ୟ ପବନରେ ଗନ୍ଧ କି ମାଛି ଉଡ଼ିବା ଜଣା ପଡ଼ି ନଥିଲା ।

ମୃତଦେହକୁ ବାହାର କଲାପରେ, କଦଳୀବାଡ଼ ପାଖକୁ ଲାଗି ଇଞ୍ଜିନିୟରଙ୍କ ଗ୍ୟାରେଜରୁ ଆହୁରି ଅଦ୍ଭୁତ ଜିନିଷ ବାହାରିଲା । ଗୋଟେ କଣରେ କଟ୍ଟା ରକ୍ତଲଗା ମୁଣ୍ଡବାଳ, ପାଖରେ ସିନ୍ଦୂର, ଆଉ ଗୋଟେ ରୁମାଲ ଦେହରେ ମିସେସ୍ ଚଉଧୁରୀଙ୍କ ପିନ୍ଧିଥିବା ସୁନାକାଚ ଇତ୍ୟାଦି । ସମସ୍ତଙ୍କ ମନରେ ପୁଣି ସନ୍ଦେହ ଜାଗି ଉଠିଲା । ଆତତାୟୀ ବୋଧେ ଜଣେ 'ତାନ୍ତ୍ରିକ' । ତାନ୍ତ୍ରିକ ସାଧନା ପାଇଁ ମିସେସ୍ ଚଉଧୁରୀଙ୍କୁ ହତ୍ୟା କରାଯାଇଛି । ତାଙ୍କର କେଶଗୁଚ୍ଛ, ପିନ୍ଧିଥିବା ଗହଣା, ରକ୍ତଭିଜା ଲୁଗା ଲୁଚେଇ ରଖିବା ଏହାର ପ୍ରମାଣ ।

ତନ୍ତ୍ର ସାଧନା ପାଇଁ କରାଯାଇଛି । କାହ୍ନୁ ବାରିକ ସଙ୍ଗେ ଆଉ-ଜଣେ ତାନ୍ତ୍ରିକର ନିଶ୍ଚୟ ହାତ ଅଛି । କିଏ କହିଲା, ଏହା ଅନ୍ୟ ପ୍ରକାରର କଥା । କେତେ କଥା ସବୁ ଶୁଣିବାକୁ ମିଳିଲା । ମାତ୍ର ସମୟ ନଷ୍ଟ କରିବାକୁ ମୁଁ ଚାହୁଁ ନଥିଲି । ସେତେବେଳକୁ ଡ. ଏସ୍. ପି. ମିଃ ଦାସ୍ ଆସି ପହଞ୍ଚି ଯାଇଥାନ୍ତି । ସବୁଠାରୁ ବଡ଼କଥା ହେଲା, କପର

କାହ୍ନୁକୁ ଧରିବାକୁ ପଡ଼ିବ । ସେ ଧରାପଡ଼ିଲେ ଘଟଣା ବିଷୟରେ ସମସ୍ତ ତଥ୍ୟ ଜଣାପଡ଼ିବ । ତେଣୁ ଡି. ଏସ୍. ପି ଶ୍ରୀ ଆର୍. କେ. ଦାସ୍‌ଙ୍କୁ କାହ୍ନୁ ବାରିକ ଗାଁକୁ ଯାଇ ସେଠାରେ ଖବର ସଂଗ୍ରହ କରି ଯଦି ସେ ଗାଁକୁ ଯାଇଥାଏ ତାକୁ ଧରିବାକୁ ନିର୍ଦ୍ଦେଶ ଦେଲି । ତା' ଛଡ଼ା ଆଉ ଦଳେ, ଦୁଇଦଳ ଅଫିସର ଭୁବନେଶ୍ୱରର ବିଭିନ୍ନ ହୋଟେଲ ଏବଂ ତା'ର ସାଙ୍ଗସାଥୀଙ୍କ ଘର ଖୋଜିବାକୁ ବାହାରିଗଲେ । ସ୍ଥାନ ଉପରେ ମିଃ ପାଣିଗ୍ରାହୀ ତଦନ୍ତ ଆରମ୍ଭ କଲେ ।

ସନ୍ଧ୍ୟା ଛଅଟା ବେଳକୁ ଆର୍. କେ. ଦାସ୍ କାହ୍ନୁ ବାରିକର ଗାଁ, ଶଶୁର ଘର ଗାଁ ନଗକାରପୁର ଇତ୍ୟାଦି ବୁଲି ଫେରିଲେ । କେଉଁଠି ତାର ଖବର ମିଳିଲା ନାହିଁ । ମାତ୍ର ଶଶୁର ଘରୁ ସେ କାହ୍ନୁର ଗୋଟିଏ ଫଟୋ ପାଇଥିଲେ ଏବଂ ତାଙ୍କ ଗାଁରୁ ଜାଣିବାକୁ ପାଇଥିଲେ ଯେ ତାଙ୍କ ଗାଁର କେତେଲୋକ ରାଉରକେଲା ଅଞ୍ଚଳରେ କାମ କରନ୍ତି ।

ରାତି ଆଠଟା ବେଳେ କ୍ୟାପିଟାଲ ଥାନା ହତାରେ ସମସ୍ତ ଅଫିସରମାନଙ୍କୁ ବସାଇ ଆଉଥରେ ହତ୍ୟାକାଣ୍ଡର ତଦନ୍ତ ବିଷୟରେ ଆଲୋଚନା କଲି । ସେଇଦିନ ରାତିରେ ମିଃ. ଦେ ବୋଲି ଜଣେ ଏସ୍. ଆଇଙ୍କୁ ରାଉରକେଲା ପଠାଗଲା । ତା' ପରଦିନ ସନ୍ଧ୍ୟା ପର୍ଯ୍ୟନ୍ତ କିଛି ଖବର ମିଳି ନଥାଏ । ହଠାତ୍ ସନ୍ଧ୍ୟା ଛଅଟା ପନ୍ଦର ମିନିଟ୍‌ରେ ରାଉର-କେଲାରୁ ଗୋଟିଏ ଟ୍ରଙ୍କ୍‌କଲ୍ ଆସିଛି ବୋଲି ଖବର ମିଳିଲା । ଟେଲି-ଫୋନ୍ ଧରିଲା ପରେ, ସବ୍‌ଇନ୍‌ସପେକ୍ଟର ଦେ ରାଉରକେଲାରୁ କହିଲେ ଯେ, ମୋ କହିବା ଅନୁସାରେ ସେ ୨୦ ନମ୍ବର ଫାଣ୍ଡି ଅଫିସରଙ୍କୁ ଧରି ସେ ଅଞ୍ଚଳରେ ପସାଙ୍ଗ ଲାଇମ୍ ଖଣିରେ କାମ କରୁଥିବା ନଗକାରପୁର ଅଞ୍ଚଳର କେତେଜଣ ଶ୍ରମିକଙ୍କୁ ଥାନାକୁ ଆଣି ପଚରା ଉଚରା କରିଥିଲେ, ମାତ୍ର କେହି କାହ୍ନୁକୁ ଚିହ୍ନି ନାହାଁନ୍ତି ବୋଲି କହିଲେ । ପଚରା ଉଚରା କରୁଥିବା ସମୟରେ ସେମାନଙ୍କ ଭିତରୁ ଜଣକର ବ୍ୟବହାରରେ ଟିକିଏ ସନ୍ଦେହ ହେବାରୁ ତାକୁ ଧମକ ଦେଇ ପଚାରିବାରୁ ଶ୍ରମିକଜଣକ ସଙ୍ଗେ ସଙ୍ଗେ ମାନି ଥିଲା ଯେ ତାଙ୍କ ଗାଁର କାହ୍ନୁଆ ଦିନକ ତଳେ ହଠାତ୍

ଆସି ତାଙ୍କ ପାଖେ ପହଞ୍ଚିଥିଲା । ସେମାନେ ତାଙ୍କୁ ଗାଁ କଥା ପଚରା ପଚରି କଲେ, ମାତ୍ର କାହ୍ନୁଆ କିଛି କହୁ ନ ଥାଏ । ଶେଷକୁ ସେ ଜଣେ ଇଞ୍ଜିନିୟରଙ୍କ ସ୍ତ୍ରୀଙ୍କୁ ହତ୍ୟା କରିଛି ବୋଲି ତାଙ୍କ ଆଗରେ ପ୍ରକାଶ କରିଥିଲା । ତା' କଥା ଶୁଣି ସେମାନେ ସେଦିନ ତାକୁ ତାଙ୍କ ପାଖରେ ରହିବାକୁ ମନାକଲେ । ରାତିଟି ତାଙ୍କ ପାଖେ ରହି ତା' ପରଦିନ ସକାଳୁ ସେ 'ଦିଲ୍ଲୀ' ଆଡ଼େ ଉତ୍କଳ ଏକ୍ସ୍‌ପ୍ରେସରେ ବସି ଚାଲିଗଲା । ଦିଲ୍ଲୀରେ ସେ କାହାପାଖକୁ ଗଲା, କାହାପାଖେ ରହିବ, ଏ କଥା ସେମାନେ କହି ପାରିଲେ ନାହିଁ । କେବଳ ଏସ୍. ଆଇ. ଙ୍କ ସେମାନଙ୍କ ଠାରୁ ଜାଣିବାକୁ ପାଇଲେ ଯେ ଦିଲ୍ଲୀର "ତ୍ରାନସ ଜମୁନା" ଅଞ୍ଚଳରେ ତାଙ୍କ ଗାଁ ର କେତେକ ଲୋକ ଦାଦନ ଶ୍ରମିକ ହିସାବରେ କାମ କରୁଛନ୍ତି । ଏତିକି ଖବର ଛଡ଼ା ସେମାନେ ଅଧିକା କିଛି କହି ପାରି ନଥିଲେ ।

ଏତିକି ଶୁଣିଲାପରେ କାହ୍ନୁକୁ ଧରିବା ଆଶା କ୍ଷୀଣ ହୋଇଗଲା । ଦିଲ୍ଲୀ ସହର ମଧ୍ୟରୁ ଜଣକୁ ବାହାର କରିବା ଆଶାତୀତ କଥା । ଲକ୍ଷ ଲକ୍ଷ ଲୋକଙ୍କ ଭିତରେ କିଏ କେଉଁଠି ରହୁଛି ଖୋଜି ପାଇବା ପୁଲିସ ପକ୍ଷରେ କେତେଦୂର ସମ୍ଭବ ? ଯାହାହେଉ କାହ୍ନୁ ବିଷୟରେ କିଛି ଖବର ମିଳିଥିବା ହେତୁ ଏସ୍. ଆଇ. ଙ୍କୁ ଧନ୍ୟବାଦ ଦେଲି । ସେଇ-ଦିନ ରାତିରେ ଏସ୍. ଆଇ ନିକୁଞ୍ଜ ମହାନ୍ତି ଏବଂ ଜଣେ ସି. ଆଇ. ଙ୍କୁ ଇନ୍‌ସ୍‌ପେକ୍ଟରଙ୍କୁ ଦିଲ୍ଲୀ ପଠାଗଲା । ଦିଲ୍ଲୀ ଗଲାବେଳେ ସେମାନେ କେବଳ କାହ୍ନୁର ଗୋଟିଏ ଫଟୋ ସଙ୍ଗରେ ନେଇଥିଲେ । କାହ୍ନୁକୁ ଧରିବା ଆଶା ମନେ ମନେ କମି କମି ଯାଉଥାଏ । ତଥାପି ପୁଲିସ ଅଫିସର ସବୁବେଳେ ଆଶାୟୀ । ଖୁନୀ ଆସାମୀ କେବେ ଲୁଚି ରହି ପାରିବନି ।

ଚାରିଦିନ ପରର ଘଟଣା । ସକାଳୁ ସକାଳୁ ଦିଲ୍ଲୀର ଓଡ଼ିଶା ଭବନରୁ ଫୋନ୍ ଆସିଥାଏ । ଦିଲ୍ଲୀରୁ ଫୋନ୍ କରିଥିଲେ ଏସ୍. ଆଇ ନିକୁଞ୍ଜ ମହାନ୍ତି । ସେ ଫୋନ୍‌ରେ କହିଲେ ଯେ, "କାହ୍ନୁ ଧରାପଡ଼ିଛି ।" ଆଶ୍ଚର୍ଯ୍ୟ କଥା ! ଠିକଣା ନାହିଁ, କିଛି ନାହିଁ, ଦିଲ୍ଲୀ ସହରରୁ ଓଡ଼ିଶା ପୁଲିସ ଦି' ଦିନ ମଧ୍ୟରେ ହତ୍ୟାକାରୀକୁ ଠାବ କରିନେଇ ଧରି ପାରିଲେ ।

ମୁଁ ଅତ୍ୟନ୍ତ ଖୁସି ହେଲି । କାହାକୁ କିଛି ନ କହି କାହ୍ନୁକୁ ଧରି ଭୁବନେଶ୍ୱର ଆସିବାକୁ ମିଃ ମହାନ୍ତିଙ୍କୁ ନିର୍ଦ୍ଦେଶ ଦେଲି ।

ଆସାମୀକୁ ଧରି ଦିଲ୍ଲୀରୁ ଆସି ପହଞ୍ଚିବା ପରେ ମୁଁ ଏସ୍. ଆଇ ନିକୁଞ୍ଜ ମହାନ୍ତିଙ୍କୁ ଆସାମୀକୁ ଠାବ କରିବା ସମ୍ପର୍କରେ ପ୍ରଶ୍ନ କରିବାରୁ ସେ କହିଲେ—ସେମାନେ ଦିଲ୍ଲୀରେ ପହଞ୍ଚିବା ପରେ କାହ୍ନୁକୁ ଧରି-ବାର ସୂତ୍ର ଚିନ୍ତା କରି କରି ଅନ୍ୟମନସ୍କ ଭାବରେ ଏଣେ ତେଣେ ଘୂରି ବୁଲୁଥିବା ସମୟରେ ଗୋଟିଏ ପାନ ଦୋକାନ ନିକଟରେ ପହଞ୍ଚିଲେ । ପାନ ଦୋକାନୀଠାରୁ ଦୁଇଖଣ୍ଡ ପାନପାଇଁ ବରାଦଦେଇ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହେଲାବେଳେ ପାନଦୋକାନୀଟି ପଚାରିଲା, "ଆଜ୍ଞା ଆପଣମାନେ କଅଣ ଓଡ଼ିଶାରୁ ଆସିଛନ୍ତି କି ?" ପାନ ଦୋକାନୀଟି ଓଡ଼ିଆ ଜାଣିଥିବାରୁ ଏମାନେ ଭାରି ଖୁସି ହେଲେ । ପାନ ଦି'ଖଣ୍ଡି ନେଇ ସେମାନେ ତାକୁ କାହ୍ନୁର ଫଟୋ ଦେଖାଇଥିଲେ । ଏପରି ଜଣେ ଶ୍ରମିକ ଏ ଅଞ୍ଚଳରେ କାମ କରୁଛି କି ବୋଲି ପଚାରିଲେ । ଦେଖୁ ଦେଖୁ ପାନଦୋକାନୀଟି କହିଲା ମାତ୍ର ଦିନକ ତଳେ ଏଇ ଲୋକଟା ଆସି ଅଳ୍ପ ଦୂରରେ ତିଆରି ହେଉଥିବା କୋଠା କାମରେ ଲାଗିଛି ଏବଂ ସକାଳୁ ସକାଳୁ ତା' ଦୋକାନରୁ ପାନ ନେଇ ଯାଇଛି । ଏମାନେ ବିଶ୍ୱାସ କରି ପାରିଲେନି । ମାତ୍ର ତା' କଥା ଅନୁସାରେ କାମ ହେଉଥିବା କୋଠା ପାଖକୁ ଗଲାବେଳକୁ କାହ୍ନୁକୁ ଅଳ୍ପ ଦୂରରେ କାମ କରୁଥିବା ଦେଖି-ପାରିଲେ । ଶିକାରକୁ ଆଗରେ ଦେଖିଲେ ଶିକାରୀ ମନ ଭିତରେ ଯେଉଁ ଟେନ୍‌ସନ୍ ସୃଷ୍ଟି ହୁଏ, ହତ୍ୟାକାରୀକୁ ସାମ୍ନାରେ ଦେଖି ତଦନ୍ତକାରୀ ପୁଲିସ ମନରେ ସେଇ ପ୍ରକାର ଟେନ୍‌ସନ୍ ସୃଷ୍ଟି ହେଲା । ସେତେ-ବେଳକୁ କାହ୍ନୁ ଲଣ୍ଡା ହୋଇ ଯାଇଥାଏ, ମାତ୍ର ଦୂରରୁ ସେମାନେ କାହ୍ନୁକୁ ତା'ର ଫଟୋ ଦେଖି ଚିହ୍ନି ନେଇଥିଲେ । କାଳ ବିଳମ୍ବ ନକରି ଏସ୍. ଆଇ ମହାନ୍ତି ତାରବାଡ଼ ଡେଇଁ 'କାହ୍ନୁକୁ' କାମ କରୁଥିବା ସ୍ଥାନଉପରେ ମାଡ଼ିବସିଲେ । କିଛି ସମୟ ପାଇଁ ସେଠାରେ ଏକପ୍ରକାର ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହେଲା । ମାତ୍ର ଓଡ଼ିଶାରୁ ପୁଲିସ ଆସିଛନ୍ତି ଜଣେ ହତ୍ୟାକାରୀକୁ ଧରିବାକୁ ଶୁଣିଲା ପରେ ପରିସ୍ଥିତିଟି ଅନ୍ୟପ୍ରକାର ହେଲା । ଘେରିଯାଇଥିବା ଶ୍ରମିକମାନେ କାହ୍ନୁକୁ ଛାଡ଼ିଦେଲେ । ତଦନ୍ତ-

କାଶୀ ଅଫିସର କାହ୍ନୁର ଫଟୋ ମଧ୍ୟ ଦେଖାଇଲେ । ସେଠାରେ କାହ୍ନୁର ବାଟନଥିଲା କିଛି କହିବା ପାଇଁ ।

କାହ୍ନୁକୁ ଧରି ଏମାନେ ଦୁଇଦିନ ପରେ ଭୁବନେଶ୍ୱରରେ ପହଞ୍ଚିଲେ । ଥାନାକୁ ଆସିଲା ପରେ କାହ୍ନୁ ସବୁ କଥା କହିଲା । ସେ କହିଲା ଯେ, ସାତ, ଆଠ ବର୍ଷ ଧରି ସେ ଇଞ୍ଜିନିୟର ଚଉଧୁରୀଙ୍କ ଘରେ ଏନ୍. ଏମ୍. ଆର୍. ହିସାବରେ କାମ କରି ଆସୁଥିଲା । ଆଶା କରିଥିଲା ଦିନେନା ଦିନେ ଇଞ୍ଜିନିୟର ସାହେବ ତାକୁ ପରମାନେଣ୍ଟ କରିଦେବେ । ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । କାହ୍ନୁ ହାତକୁ ଦୁଇହାତ ହେଲା । ମାତ୍ର ତା'ର ଚାକିରି ସ୍ଥାୟୀ ହୋଇପାରୁ ନଥାଏ । ଥରକୁ ଥର ସେ ଇଞ୍ଜିନି-ୟର ସାହେବଙ୍କୁ କହେ, କିଛି ଫଳ ହୁଏନି । ସ୍ଥାୟୀ ଚାକିରୀ ପାଇଁ ଆପତ୍ତି କଲାବେଳେ ବେଳେ ବେଳେ ମିସେସ୍ ଚଉଧୁରୀ ତା'ର ପ୍ରତିବାଦ କରନ୍ତି । କୁହନ୍ତି କାହ୍ନୁଟା ଅକର୍ମା । ତାକୁ କାହିଁକି ସ୍ଥାୟୀ କରାଯିବ ? ଆଉ କିଛି ଦିନ ଯାଉ, ଇତ୍ୟାଦି । ମିସେସ୍ ଚଉଧୁରୀଙ୍କ କହିବା କଥା ସତ ହେଉ କି ମିଛ ହେଉ, କାହ୍ନୁ ମନରେ ଧାରଣା ହେଲା ଯେ ମିସେସ୍ ଚଉଧୁରୀ ହିଁ ତା'ର ଚାକିରୀ ସ୍ଥାୟୀ ନହେବା ପାଇଁ ଦାୟୀ । ହତ୍ୟାକାଣ୍ଡ ଅଳ୍ପଦିନ ପୂର୍ବରୁ ସେ ଚିନ୍ତାକଲା ମିସେସ୍ ଚଉଧୁରୀଙ୍କୁ ଇହଧାମରୁ ବିଦାୟ ଦେବ । ଆଠ ଦିନ ପୂର୍ବରୁ ସେ ମିସେସ୍ ଚଉଧୁରୀଙ୍କ ସଙ୍ଗେ ବଜାରକୁ ଯାଇଥିଲା । ତାଙ୍କଠାରୁ କେତୋଟା ଟଙ୍କା ମାଗି ବଜାରରୁ ଗୋଟେ ଧାରୁଆ କଟାରି କିଣିଲା । କଟାରିଟି କିଣିଲା ପରେ, ତାକୁ ସେ ଲୁଚେଇ କରି ନିଜେ ରହୁଥିବା ଇଞ୍ଜିନିୟରଙ୍କ ଗ୍ୟାରେଜ ଘରେ ରଖିଲା । ମନେ ମନେ ଠିକ୍ କଲା ମିସେସ୍ ଚଉଧୁରୀଙ୍କୁ ହତ୍ୟାକରିବ । ସୁବିଧା ଆଉ ସୁଯୋଗ ମନେ ମନେ ଖୋଜୁଥିଲା ।

ତା'ପାଇଁ ସୁଯୋଗ ଆସିଲା– ଯେଉଁଦିନ ଇଞ୍ଜିନିୟର ସାହେବ ବରହମପୁର ଟୁର୍‌ରେ ଗଲେ । ପିଲାମାନେ ସ୍କୁଲ ଆଉ କଲେଜକୁ ଗଲାପରେ ଘରେ ରହିଲେ ସେ, ଆଉ ଜଣେ ଅର୍ଦ୍ଦଳି, ଆଉ ମିସେସ୍ ଚଉଧୁରୀ । ଆଉ ଅର୍ଦ୍ଦଳିଜଣଙ୍କ ପିଲାଙ୍କ ପାଇଁ ଟିଫିନ୍ ନେଲାପରେ ଘରେ ମିସେସ୍ ଚଉଧୁରୀ ରହିଲେ ଏକା । ଏଇ ସୁଯୋଗରେ କାହ୍ନୁ

ଗଧିଆ ଘର ପାଖେ ମିସେସ୍ ଚଉଧୁରୀଙ୍କୁ ହତ୍ୟା କଲା । ହତ୍ୟା କଲା-ପରେ ଘରେ ଥିବା ପଲିଥିନ ବ୍ୟାଗ୍‌ରେ ତାଙ୍କର ମୃତଦେହକୁ ବାନ୍ଧି, ହତ୍ୟା ସ୍ଥାନରେ ପଡ଼ିଥିବା ରକ୍ତଦାଗକୁ ଭଲଭାବେ ସଫ ପକାଇ ସଫା କରି ନେଲା । ଏ ସମସ୍ତ କାମ କରିବାକୁ ତାକୁ ମାତ୍ର ଘଣ୍ଟାଟିଏ ଲାଗି-ଥିଲା । ତା'ର ଉଦ୍ଦେଶ୍ୟ ଥିଲା, ମୃତ ଦେହକୁ ରାତି ହେଲେ ଅନ୍ୟ କୁଆଡ଼େ ନେଇଯିବ । ସେଥିଲାଗି ସେ ପଲିଥିନ୍ ବ୍ୟାଗ୍‌ରେ ବାନ୍ଧି କାନ୍ଥ ଆରପଟ ନଳା ପାଖେ ଲୁଚାଇ ରଖିଥିଲା । ବଗିଚାରେ ଗାତଖୋଳି ପୋତିରଖିବ ବୋଲି ଚେଷ୍ଟା କରିଥିଲା, ମାତ୍ର ବାଧକଯୋଗୁଁ ତାହା ସମ୍ଭବ ହୋଇପାରିନ । ଯେଉଁମାନେ ମିସେସ୍ ଚଉଧୁରୀଙ୍କ କଥା ତାକୁ ପଚାରୁ-ଥିଲେ ସେ ମିଛରେ ଧଳା ଆମ୍ବାସାଡ଼ର କାର କଥା କହିଥିଲା । ରାତି ୧୧ଟା ବେଳେ ଯେତେବେଳେ ପୁଲିସକୁ ଖବର ଦେବା ପାଇଁ ମିଃ ମହା-ପାତ୍ର ନିଷ୍ପତ୍ତି ନେଲେ, ସେତେବେଳେ "କାହ୍ନୁ" ତାଙ୍କ ଘରୁ ଡେଇଁ ପଳାଇ ଯାଇଥିଲା । କାହ୍ନୁ ସମସ୍ତ ଘଟଣା ଠିକ୍ ଭାବେ ତଦନ୍ତକାରୀ ଅଫିସରଙ୍କ ଆଗେ ବର୍ଣ୍ଣନା କରିଥିଲା ।

ତଦନ୍ତକାରୀ ଅଫିସର ଘଟଣା ତଦନ୍ତ କରି ଠିକ୍ ସମୟରେ କୋର୍ଟକୁ କେଶ ବିଚାର ପାଇଁ ପଠାଇଦେଲେ । କୋର୍ଟରେ କାହ୍ନୁ ବାରିକ କେଶ୍ ବହୁଦିନ ଧରି ଚାଲିଲା । ଶେଷକୁ ମାନ୍ୟବର ପୁରୀ ଜିଲ୍ଲା ଜଜ୍ ରାଏ ଦେଲେ ଯେ, କାହ୍ନୁ ବାରିକ ଜଣେ ନିରୀହ ସ୍ତ୍ରୀଲୋକକୁ ହତ୍ୟା କରିଥିବା ଯୋଗୁ ତାକୁ ଫାଶୀ ଦଣ୍ଡ ଦିଆଯିବ । ଜଜ୍‌ଙ୍କ ରାଏ - କାହ୍ନୁ ବାରିକ, ମିସେସ୍ ଚଉଧୁରୀଙ୍କ ହତ୍ୟାକାରୀକୁ ଫାଶୀଦଣ୍ଡ ଦିଆଯିବ । ରାଏ ଶୁଣିଲା ପରେ କାହ୍ନୁ ବାରିକ କୋର୍ଟ ଭିତରେ ପାଗଳ ହୋଇ ଉଠିଥିଲା, କୋର୍ଟରେ ପ୍ରଳାପ ଆରମ୍ଭ କରିଦେଲା ।

ଶେଷରେ ମୃତ୍ୟୁଦଣ୍ଡାଦେଶ ପାଇ କାହ୍ନୁ ଓଡ଼ିଶାର ଉଚ୍ଚ ନ୍ୟାୟା-ଳୟରେ ଆପତ୍ତି କଲା । ଉଚ୍ଚନ୍ୟାୟାଳୟ ତା'ର ଆପତ୍ତି ଶୁଣି, ମୃତ୍ୟୁ-ଦଣ୍ଡାଦେଶ ପରିବର୍ତ୍ତେ ଆଜୀବନ କାରାଦଣ୍ଡ ଭୋଗିବା ପାଇଁ ଆଦେଶ ଦେଲେ । ଆଜି କାହ୍ନୁ ମିସେସ୍ ଚଉଧୁରୀଙ୍କ ହତ୍ୟା ପାଇଁ ଆଜୀବନ କାରାଦଣ୍ଡ ଭୋଗ କରୁଛି ।

●

## ଆସାମୀ
## ହିମାଂଶୁ

୧୯୮୨ ମସିହା ମେ ମାସ ସତର ତାରିଖ ସନ୍ଧ୍ୟା । ସମୟ ୭ଟା ବାଜିବାକୁ ଦଶମିନଟ୍ ବାକିଥାଏ । ହଠାତ୍ ଭୁବନେଶ୍ୱର ଆକାଶଟା ମେଘାଚ୍ଛନ୍ନ ହୋଇ ଉଠିଲା । ବିଜୁଳି ଘଡ଼ଘଡ଼ି ଶବ୍ଦରେ ସହରର ହୃତ୍‌ପିଣ୍ଡ ଉପରେ ମୃଦୁ କମ୍ପନ । ବର୍ଷା, ବିଜୁଳି ସାଙ୍ଗକୁ ସହର ମଧ୍ୟରେ ପ୍ରବଳ ଧୂଳିଝଡ଼ । ବର୍ଷା, ପବନ ଭିତରେ ବିଜୁଳି ସରବରାହ ବନ୍ଦ ହୋଇଗଲା । ଜନଗହଳି, ଜନପଥ ଜନଶୂନ୍ୟ ହେବାକୁ ଆରମ୍ଭ କଲା । ଧୂଳିଝଡ଼ ଭିତରେ ବେଳେ ବେଳେ ରିକ୍ସାବାଲାଙ୍କ ଘଣ୍ଟିଶବ୍ଦ ଛଡ଼ା ଯାନବାହାନର ଯାତାୟାତ କମି କମି ଆସୁଥାଏ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାମ । କାମ ଭିତରେ ଟିକିଏ ଭାବିବାକୁ ସମୟ ନଥାଏ । ହଠାତ୍ ବିଜୁଳିବତୀ ଲିଭିଗଲାରୁ କାମଭିତରୁ ମୁକ୍ତି ପାଇ ମୁଁ ଠିଆ-ହୋଇଥିଲି ଝରକା ପାଖେ । ଝିପି ଝିପି ବର୍ଷା ପରେ ଥଣ୍ଡାଳିଆ ପବନ ବେଶ୍ ଉପଭୋଗ୍ୟ ହୋଇଥିଲା ।

ଅସରନ୍ତି ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ, ହଠାତ୍ ଅଫିସ ଟେଲିଫୋନ୍‌ଟା ବାଜି ଉଠିଲା । ଅନ୍ଧାର ଭିତରେ ହାତ ବୁଲାଇ ଟେଲି-ଫୋନ୍‌ର ରିସିଭରଟିକୁ ଉଠାଇ ଆଣି ହ୍ୟାଲୋ କହିଲି ପରେ ଶୁଣିବାକୁ ପାଇଲି—ସାର୍, ମୁଁ ଇନସ୍‌ପେକ୍ଟର ଲକ୍ଷ୍ମୀସାଗର କହୁଛି । ଇନସ୍‌-ପେକ୍ଟର ଲକ୍ଷ୍ମୀସାଗର—ମିଃ ବୋଷ୍‌ଙ୍କ କଣ୍ଠରେ ଅସ୍ଥିରତାର ଆଭାସ୍ । ପଚାରିଲି—"ଏସ୍ ମିଃ ବୋଷ !" ସେପଟୁ ମିଃ ବୋଷ ଅସ୍ପଷ୍ଟ କଣ୍ଠରେ କହି ଚାଲିଲେ—"ସାର୍, ଏଇ ଅଳ୍ପ ସମୟ ତଳେ କଟକ-ଭୁବନେଶ୍ୱର ରାସ୍ତା 'ପଣ୍ଡା ଆଣ୍ଡ୍ କମ୍ପାନି" ପାଖେ ଗୋଟେ ହତ୍ୟାକାଣ୍ଡ ଘଟିଗଲା ।"

ହତ୍ୟାକାଣ୍ଡ ଘଟିଥିବା ସ୍ଥାନକୁ ଶୀଘ୍ର ଯିବାପାଇଁ ନିର୍ଦ୍ଦେଶ ଦେଇ ମୁଁ ଟେଲିଫୋନ୍ ଥୋଇଲି । ସେତେବେଳକୁ 'ଚୁରୁଟ୍'ରୁ ନିଆଁ ଲିଭି ଯାଇଥାଏ । ପକେଟ ଭିତରୁ ଲାଇଟରରୁ ବାହାର କରି ଚୁରୁଟ୍‌ରେ ନିଆଁ ଲଗାଇ ରୁମ୍‌ର କଲିଂ ବେଲ୍ ଦେଲି ଅର୍ଦ୍ଦଳୀ ଉଦ୍ଦେଶ୍ୟରେ । ଆଦେଶ ମୁତାବକ ସଙ୍ଗେ ସଙ୍ଗେ ଜଣାଶୁଣା ପେଟ୍ରୋଲିଂ ଫିଆଟ୍ କାର ପୋର୍ଟିକୋ ତଳେ ରହିବାର ଶବ୍ଦ ହେଲା । ସମୟ ନଷ୍ଟ ନକରି ହତ୍ୟାକାଣ୍ଡ ଘଟିଥିବା ଘଟଣାସ୍ଥଳକୁ ଯିବାପାଇଁ ବାହାରି ପଡ଼ିଲି ।

ଗାଡ଼ି ଡ୍ରାଇଭର ମଧ୍ୟ, ବହୁ ଦିନର ପୁରୁଣା ଡ୍ରାଇଭର । ସହରର ଗଳିକନ୍ଦି ତାକୁ ଭଲ ଭାବେ ଜଣା । ଅଳ୍ପ ସମୟ ମଧ୍ୟରେ ସହର୍‌ର ଘନ ଅନ୍ଧକାର ଭେଦକରି ତା' ଗାଡ଼ି ରସୁଲଗଡ଼ ଛକ ଦେଇ କଟକ-ଭୁବନେଶ୍ୱର ରାସ୍ତା ଉପରେ ଲକ୍ଷ୍ମୀସାଗର ଆଡ଼େ ଗ୍ଳଲା । ପଣ୍ଡା ଆଣ୍ଡ କମ୍ପାନୀର ବିଶାଳ ପ୍ରାସାଦ କଂପ୍ଲେକ୍ସ ପାର ହେଲା ପରେ, ଡ୍ରାଇଭର ଗାଡ଼ି ଅଟକାଇ ଦେଲେ । ମିଃ ବୋଷ୍, ରାସ୍ତା କଡ଼ରେ ଠିଆ ହୋଇ ଅପେକ୍ଷା କରିଛନ୍ତି । ଗାଡ଼ିରୁ ଓହ୍ଲାଇ ସମସ୍ତେ ହତ୍ୟାକାଣ୍ଡ ଘଟିଥିବା ଘଟଣାସ୍ଥଳ ଆଡ଼େ ଗ୍ଳଲୁ ।

ରାସ୍ତାଠାରୁ ଅନତିଦୂରରେ ମିଃ ଦାସଗୁପ୍ତାଙ୍କ ପାଚେରୀ ଘେରା ଘର । ଘର ମଝିରେ ଗୋଟେ ଛୋଟ ଅଗଣା । ରାସ୍ତା ଆଡ଼କୁ ମୁହଁ କରି ପ୍ରବେଶ ଦ୍ୱାର । ପାଖରେ ଅଳ୍ପ ଅଳ୍ପ ଅମରା ବୁଦା । ପଛପଟେ ଧାନବିଲ । ଅଳ୍ପ କିଛି ବାଟ ଗଲେ ଓଡ଼ିଶା ଫରେଷ୍ଟ କର୍ପୋରେସନ୍‌ର ବିରାଟ କାଠ ଗୋଲା । ତାରି ଭିତରକୁ ପ୍ରବେଶ କରିବା ବେଳେ ଘର ଭିତରୁ ସ୍ତ୍ରୀଲୋକମାନଙ୍କର କରୁଣ କାନ୍ଦଣା କାନରେ ବାଜିଲା । ଅନ୍ଧାର ମଧ୍ୟରେ ଗୋଟେ ଛୋଟ ଲଣ୍ଠନ ମିଞ୍ଜି ମିଞ୍ଜି ହୋଇ ଅଗଣା ମଧ୍ୟରେ ଜଳୁଥାଏ । ମଝି ଅଗଣାରେ ଜଣକର ମୃତଦେହ ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ପଡ଼ିରହିଥିଲା ଏବଂ ମୃତଦେହର ଅଳ୍ପ ଦୂରରେ ଆଉ ଜଣେ ବ୍ୟକ୍ତି ରକ୍ତାକ୍ତ ଅବସ୍ଥାରେ ସଂଜ୍ଞାହୀନ ହୋଇ ପଡ଼ିଥାଏ । ପାଖ ଘର ବାରଣ୍ଡା ଉପରେ ଠିଆ ହୋଇଥିବା ଛୋଟ ପିଲାମାନଙ୍କ ଆଖିରେ ଲୁହ ।

ଘରେ ବହୁ ଲୋକ ଥିଲେ ମଧ୍ୟ, ଏକ ବିରାଟ ଶୂନ୍ୟତା ବିରାଜମାନ କରୁଥାଏ । କାହା ମୁହଁରେ କଥା ନ ଥାଏ । ସମସ୍ତେ ଯେପରି ବିଶ୍ୱାସ କରି ପାରୁନଥିଲେ ଯେ ମୁହୂର୍ତ୍ତିକ ମଧ୍ୟରେ ଏତେ ଘଟଣା ଘଟିଗଲା କିପରି ? ପୋଲିସ୍ ଘଟଣା ସ୍ଥଳରେ ମୃତ ଦେହକୁ ଦେଖିଲା ପରେ, ଆଘାତପ୍ରାପ୍ତ ସଂଜ୍ଞାହୀନ ଲୋକଟିକୁ ପୁଲିସ୍ ଗାଡ଼ିରେ କ୍ୟାପିଟାଲ ଡାକ୍ତରଖାନାକୁ ପଠାଇବାର ବ୍ୟବସ୍ଥା କରି ଘଟଣା ବିଷୟରେ ଜାଣି-ବାକୁ ଚାହିଁଥିଲେ । ଘଟଣାଟି ହେଲା—ଅନେକ ଦିନ ତଳର କଥା । ୧୯୪୬ ମସିହା ଶେଷ ବେଳକୁ ପୂର୍ବ-ବଙ୍ଗରେ ହିନ୍ଦୁ ମୁସଲମାନ ଦଙ୍ଗା-ଗୋଳ ଆରମ୍ଭ ହୋଇ ଯାଇଥାଏ । ଦେଶ ସ୍ୱାଧୀନ ହେବ ଏବଂ ତା' ସଙ୍ଗେ ସଙ୍ଗେ ବିଭାଜନ ବି ହେବ, ଏହା ସମସ୍ତେ ଜାଣି ସାରିଥାନ୍ତି ।

ଦାସଗୁପ୍ତା ପରିବାର ପୂର୍ବ-ବଙ୍ଗର ଗୋଟେ ନାମଜାଦା ପରିବାର । ସିଅମାନଙ୍କର ଦେଶ ପୂର୍ବବଙ୍ଗ । ରବୀନ୍ଦ୍ରଙ୍କର 'ସୁନାର ବଙ୍ଗଳା' । ମାନ୍ ଦେଶ ଭାଗ ଭାଗ ହେଲା ପୂର୍ବରୁ ଦାସଗୁପ୍ତା ପରିବାର 'ସୁନାର ବଙ୍ଗଳାରେ' ତାଙ୍କର ପୂର୍ବପୁରୁଷର ଶସ୍ୟଶ୍ୟାମଳା ଭିଟାମାଟି ଛାଡ଼ି ପ୍ରାଣ ନେଇ ପଳାଇ ଆସିଲେ । ସେ ଏକା ନୁହନ୍ତି । ତାଙ୍କପରି ହଜାର ହଜାର ଲକ୍ଷ ଲକ୍ଷ ଲୋକ ଜୀବନପାଇଁ ସବୁ ତ୍ୟାଗ କରି ପଳେଇ ଆସିଥିଲେ । ଦାସଗୁପ୍ତା ପରିବାର, ଦେଶ ବିଭାଜନ ପରେ କଲିକତା ମହାନଗରୀରେ କେତେଦିନ କଟାଇଲେ ।

ସବୁଗଲା ପରେ ପରିବାର ଭରଣ ପୋଷଣ ପାଇଁ କାର୍ଯ୍ୟ ଦରକାର । କାମ ନକଲେ ଖାଇବାକୁ ଦେବ କିଏ ? ପିଲାମାନେ ଚଳିବେ କିପରି ? କଲିକତା ସହରରେ କିଛିଦିନ କଟାଇଲା ପରେ, ସେମାନେ ଓଡ଼ିଶାକୁ ଆସିଥିଲେ ୧୯୬୬ ମସିହାରେ । ପ୍ରଥମେ ସେ ଅନ୍ନସଂସ୍ଥାନ ପାଇଁ ଆରମ୍ଭ କଲେ ପାଉଁରୁଟି କାରଖାନା । ପୁରୀ ଜିଲ୍ଲାର ଜଟଣୀ ବଜାରରେ ତାଙ୍କ ପାଉଁରୁଟି କାରଖାନା ବେଶ ଭଲ ଚାଲିଲା । ପରି-ବାର ଚଳିବା ପାଇଁ ଯେତିକି ଦରକାର ତା'ଠାରୁ ଯଥେଷ୍ଟ ଅଧିକା ମିଳିଗଲା ।

କଚ୍ଛଭନ ଜଙ୍କଶୀଠାରେ ବ୍ୟବସାୟ କଲାପରେ, ଦାସଗୁପ୍ତା ପରିବାର ଭୁବନେଶ୍ୱରକୁ ତାଙ୍କ ବ୍ୟବସାୟ ସଂସ୍ଥା ଉଠାଇ ଆଣିଲେ ଏବଂ ରହିଲେ ଭୁବନେଶ୍ୱରର ରିଫ୍ୟୁଜି କଲୋନୀରେ । ଦାସଗୁପ୍ତାଙ୍କ ଭଲ ବ୍ୟବହାରରେ କଲୋନୀର ପ୍ରତ୍ୟେକ ଲୋକ ଖୁସି । କଲୋନୀରେ ପୂର୍ବବଙ୍ଗର ବହୁ ରିଫ୍ୟୁଜି ଥାନ୍ତି । ସମସ୍ତେ ସମସ୍ତଙ୍କର ପୂର୍ବାବସ୍ଥା ମନେ-ପକାଇ ନିଜନିଜ ମଧ୍ୟରେ ସଦ୍‌ଭାବ ଅକ୍ଷୁଣ୍ଣ ରଖିଥିଲେ । ଏହି କଲୋନୀରେ ରହୁଥିବା ସମୟରେ ଦାସଗୁପ୍ତା ପରିବାର ସହିତ ରାଜମିସ୍ତ୍ରୀ ମଣ୍ଡଳଙ୍କ ପରିଚୟ ହୁଏ । ମଣ୍ଡଳ, ଭଲମନ୍ଦରେ ତାଙ୍କ ଘରକୁ ଆସନ୍ତି ।

ମମତା, ଦାସଗୁପ୍ତାଙ୍କ ଝିଅ । ପିଲାଟିବେଳୁ ମମତା ଦେଖିବାକୁ ସୁନ୍ଦରୀ । କଥାବାର୍ତ୍ତା ବେଶଭୂଷାରେ କେହି ତାକୁ ଖୁଣିପାରୁ ନ ଥିଲେ । ସେତେବେଳକୁ ସେ ହାଇସ୍କୁଲର ଛାତ୍ରୀ । ମାଟ୍ରିକ୍ ପାଶ୍ କଲା ପରେ ମମତା କଲେଜରେ ପଢ଼ିଲା । ମନେମନେ ଚିନ୍ତାକରିଥାଏ, ବି. ଏ. ପାଶ୍ କଲାପରେ ସେ ନିଶ୍ଚୟ ଚାକିରି କରି ନିଜର ପରିବାରକୁ ସାହାଯ୍ୟ କରିବ । ସେ ଯେତେବେଳେ ମହିଳାକଲେଜର ପ୍ରଥମ ବାର୍ଷିକ ଛାତ୍ରୀ, ରାଜମିସ୍ତ୍ରୀ ମଣ୍ଡଳ ଦିନେ ହିମାଂଶୁ ଦାସଙ୍କୁ, ଦାସଗୁପ୍ତା ପରିବାରସଙ୍ଗେ ପରିଚିତ କରାଇ ଦେଇଥିଲେ । ହିମାଂଶୁ ବାଇଶ୍, ତେଇଶ୍ ବର୍ଷର ଯୁବକ । ସୁନ୍ଦର ସ୍ୱାସ୍ଥ୍ୟ । ଦେଖିବାକୁ ବେଶ୍ ସୁନ୍ଦର, ସୁଠାମ୍ । ସେ ମଧ୍ୟ ପୂର୍ବ-ବଙ୍ଗର ଲୋକ । ଦେଶ ବିଭାଜନ ହେଲାପରେ ବି, ସେ ନିଜର ଭିଟାମାଟି ଛାଡ଼ି ସମ୍ପୂର୍ଣ୍ଣ ଭାବେ ଭାରତକୁ ପଳାଇ ଆସି ନଥିଲେ । ସେ ପର୍ଯ୍ୟନ୍ତ ବି ତାଙ୍କର ବନ୍ଧୁବାନ୍ଧବ ପୂର୍ବବଙ୍ଗରେ ଥାନ୍ତି । ହିମାଂଶୁ କେବଳ ଭାରତକୁ ଆସିଥିଲେ ଏବଂ ଆସିଲାପରେ ଭୁବନେଶ୍ୱର ସହରରେ ତାଙ୍କର ଜଣେ ବନ୍ଧୁଙ୍କ ସାହାଯ୍ୟରେ ରାଜମହଲ ଛକ ପାଖେ ଗୋଟିଏ ହୋମିଓପାଥିକ୍ ଦୋକାନ କରି ବ୍ୟବସାୟ ଆରମ୍ଭ କରିଥିଲେ । ଦୁଇ-ତିନିବର୍ଷ ଧରି ତାଙ୍କର ବ୍ୟବସାୟ ଖୁବ୍ ଭଲ ଚାଲିଲା । ବେଶ ଲାଭବାନ୍ ହେଲେ ମଧ୍ୟ ।

ଦାସଗୁପ୍ତା ପରିବାର ସଙ୍ଗେ ପରିଚିତ ହେଲାପରେ, ହିମାଂଶୁ

ତାଙ୍କ ଘରକୁ ପ୍ରାୟ ସମୟରେ ଆସୁଥିଲେ । ସୁବିଧା ଅସୁବିଧାରେ ଦୁହେଁ ଦୁହିଁଙ୍କୁ ସାହାଯ୍ୟ କରନ୍ତି । ହିମାଂଶୁ ଏତେ ଦୂରରେ ନିଜର ଆତ୍ମୀୟ ସ୍ୱଜନଙ୍କୁ ଛାଡ଼ି ଏକୁଟିଆ ଥିବାହେତୁ ଦାସଗୁପ୍ତା ପରିବାର ତାଙ୍କୁ ଏକ ପ୍ରକାର ନିଜର ପରିବାରର ଲୋକ ହିସାବରେ ଗ୍ରହଣ କରିନେଇ ଥିଲେ ।

ମମତା, ମହିଳା କଲେଜରେ ପଢ଼ୁଥିବା ବେଳେ, ଦିନେ ଦାସଗୁପ୍ତାଙ୍କ ପଡ଼ୋଶୀ ମଣ୍ଡଳ ହିମାଂଶୁ ସଙ୍ଗେ ମମତାଙ୍କ ବିବାହ ପ୍ରସ୍ତାବ ଆଗତ କରିଥିଲେ । ଦାସଗୁପ୍ତା ଏହି ପ୍ରସ୍ତାବରେ କିଛି ଜବାବ ନଦେଇ ଝିଅ ପାଠ ପଢ଼ୁଛି, ପଢ଼ିସାରିଲା ପରେ ବିବାହ ବ୍ୟବସ୍ଥା କରିବେ ବୋଲି ମତ ଦେଇଥିଲେ । ହିମାଂଶୁ-ମମତା ମଧ୍ୟ ଏପରି ଗୋଟିଏ ପ୍ରସ୍ତାବ ଆସିଛି ବୋଲି ଜାଣି ପାରିଥିଲେ । ଦୁହିଁଙ୍କ ମଧ୍ୟରେ ବେଶ୍ ଭଲପାଇବା, ସ୍ନେହ, ହସଖୁସି । ମମତା ସବୁବେଳେ କୁହେ ସେ ବି. ଏ. ପାଶ୍ କଲାପରେ ବିବାହ କରିବ । ହିମାଂଶୁ ବୋଧେ ମନେମନେ ସେହି ଦିନକୁ ଅପେକ୍ଷା କରିଥିଲା ।

ଇତିମଧ୍ୟରେ ପ୍ରଶାନ୍ତ ଚନ୍ଦ୍ର ନାମକ ଜଣେ ଯୁବକ ଭୁବନେଶ୍ୱର ଏ.ଜି. ଅଫିସରେ ଚାକିରି କରୁଥିବା ସମୟରେ ଦାସଗୁପ୍ତା ପରିବାର ସହିତ ପରିଚିତ ହୁଅନ୍ତି । ଦାସଗୁପ୍ତାଙ୍କ ପରିବାରର ପ୍ରଶାନ୍ତଙ୍କ ପୂର୍ବପୁରୁଷଙ୍କ ସଙ୍ଗେ ବନ୍ଧୁତ୍ୱ ଥିଲା । ସେମାନଙ୍କ ଦୂର ସମ୍ପର୍କ ଆସ୍ତେ ଆସ୍ତେ ପ୍ରଶାନ୍ତଙ୍କ ଯିବା ଆସିବା ଭିତରେ ଜଣା ପଡ଼ିଲା । ପ୍ରଶାନ୍ତ ଜଣେ ଉଦୀୟମାନ ଯୁବକ । ବି. ଏ. ପାଶ୍ କଲାପରେ ଏ. ଜି. ଅଫିସରେ ଚାକିରି ପାଇଥିଲେ । ତା' ଛଡ଼ା ଜଣେ ଉତ୍ତମ ଫୁଟ୍‌ବଲ୍ ଖେଳାଳି ହିସାବରେ ସେ ଭାରତର ବିଭିନ୍ନ ସ୍ଥାନରେ ଖେଳି ଭୁବନେଶ୍ୱର ଏ: ଜି: ଅଫିସ୍‌ର ନାଁ ରଖିଥିଲେ । ତାଙ୍କର ଉତ୍ତମ ଚରିତ୍ର, ଭଦ୍ର ବ୍ୟବହାର ଦାସଗୁପ୍ତା ପରିବାରର ସମସ୍ତଙ୍କୁ ମୁଗ୍ଧ କରିଥିଲା । ଦାସଗୁପ୍ତାଙ୍କ ପରିବାର ସହିତ ତାଙ୍କର ପରିଚିତ ହେଲାପରେ, ସେ ସମସ୍ତଙ୍କର ମନ ଜିଣିଲେ । ଭଲରେ ମନ୍ଦରେ ସେ ମଧ୍ୟ ତାଙ୍କ ପରିବାରକୁ ଆସନ୍ତି । ପାରିବାରିକ ସମ୍ପର୍କ ଭିତରେ ପ୍ରଶାନ୍ତ ଆଉ ମମତାଙ୍କ ମଧ୍ୟରେ ମଧ୍ୟ ସ୍ନେହ ମମତା ଗଢ଼ି

ଉଠିଥିଲା । ମମତାଙ୍କ ଆଗରେ ପ୍ରଶାନ୍ତ ଥିଲେ ଜଣେ ଉଦୀୟମାନ୍ ଖେଳାଳି । ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ । ବହୁଦିନର ପାରିବାରିକ ବନ୍ଧୁ ।

ପ୍ରଶାନ୍ତଙ୍କ ଦାସଗୁପ୍ତା ପରିବାର ସହିତ ସମ୍ପର୍କ ଯୁବକ ହିମାଂଶୁଙ୍କ ମନରେ ସନ୍ଦେହର ଗୁଡ଼ିଆଣିଜାଲ ବାନ୍ଧି ଦେଇଥିଲା । ସେ କେବେହେଲେ ଚାହୁଁ ନଥିଲେ, ପ୍ରଶାନ୍ତ ତାଙ୍କ ପରିବାର ସହ ସମ୍ପର୍କ ସ୍ଥାପନ କରନ୍ତୁ । ସବୁଠାରୁ ତାଙ୍କ ମନରେ ଆଘାତ ଲାଗୁଥିଲା, ଯେତେବେଳେ ସେ ପ୍ରଶାନ୍ତ ଆଉ ମମତାଙ୍କୁ ଏକାଠି ହୋଇ କଥାବାର୍ତ୍ତା ହେବାର ଦେଖୁଥିଲେ । ମଣିଷ ମନରେ ସନ୍ଦେହ ଥରେ ପଶିଲେ ସେ ଭିନ୍ନ ରୂପ ନିଏ । ଭଲ ଜିନିଷ ଖରାପ ଦିଶେ । ମମତା-ପ୍ରଶାନ୍ତଙ୍କ ମଧ୍ୟରେ ଗଢ଼ିଉଠିଥିବା ପାରିବାରିକ ସମ୍ପର୍କକୁ ହିମାଂଶୁ ଅନ୍ୟ ଚକ୍ଷୁରେ ଦେଖିଲେ । ସନ୍ଦେହର କୁହେଳିକା ତାଙ୍କ ମନକୁ ଆଚ୍ଛାଦିତ କଲା । ସେ ମଝିରେ ମଝିରେ ଦାସଗୁପ୍ତାଙ୍କ ପାଖେ, ମମତା ସହିତ ତାଙ୍କର ବିବାହ ପ୍ରସ୍ତାବ ଦେଉଥାନ୍ତି । ମମତା ଏକଥା ଶୁଣିଲା, ମାନେ ବି.ଏ. ପାଶ୍ ନକରିବା ପର୍ଯ୍ୟନ୍ତ ସେ ବିବାହ କରିବ ନାହିଁ ବୋଲି ଚେକ୍‌ଠୋକ୍ ମନା କରିଦେଲା । ମମତାର ଏପରି ବ୍ୟବହାର ହିମାଂଶୁଙ୍କ ମନରେ ଦୁଃଖ ଦେବା ପରିବର୍ତ୍ତେ "ସନ୍ଦେହ"କୁ ଆହୁରି ଘନୀଭୂତ କରିଦେଲା । ସେ ମନେ ମନେ ଭାବିଲେ, ପ୍ରଶାନ୍ତହିଁ ଏସବୁ ପାଇଁ ଦାୟୀ ।

ମେ ମାସ ସତର ତାରିଖ ବର୍ଷଣମୁଖର ଏକ ସନ୍ଧ୍ୟାରେ ହିମାଂଶୁ ତାଙ୍କର ସାଇକେଲ ଧରି ଛୁଟି ଆସିଥିଲେ ଦାସଗୁପ୍ତାଙ୍କ ଘରଆଡ଼େ । ଆଗରୁ ସେ ଦେଖିଲେ, ପ୍ରଶାନ୍ତ ସେଦିନ ତାଙ୍କ ଘରକୁ ଆସିଛନ୍ତି । ଘର ଆଗରେ ସାଇକେଲ ଥୋଇ, ହିମାଂଶୁ ଦାସଗୁପ୍ତାଙ୍କ ଘର ଭିତରକୁ ପ୍ରବେଶ କଲେ । ଦୁଆର ପାଖରୁ ସେ ଶୁଣିବାକୁ ପାଇଲେ ଘର ଭିତରେ ପ୍ରଶାନ୍ତ ଆଉ ମମତାର କଥାବାର୍ତ୍ତା । ଉତ୍କ୍ଷିପ୍ତ ମନରେ ସେ ଦାସଗୁପ୍ତାଙ୍କୁ ଡାକିଥିଲେ ଏବଂ ଆଉଥରେ ବିବାହ ପ୍ରସ୍ତାବ ଆଗତ କରିଥିଲେ ତାଙ୍କ ଆଗରେ । ମାତ୍ର ଦାସଗୁପ୍ତା ଚେକ୍‌ଠୋକ୍ ଘରେ ମନା କରି ଦେଇଥିଲେ ଏବଂ ତାଙ୍କ ଘରୁ ଚାଲିଯିବା ପାଇଁ ନିର୍ଦ୍ଦେଶ

ଦେଉଥିଲେ । ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତାକୁ ନେଇ କଳହ ସୃଷ୍ଟି ହେଲା ଆଉ ଏଇ କଳହ ଭିତରେ ହିମାଂଶୁ ନିଜ ପାଖରେ ଲୁକାୟିତ ଭାବେ ଥିବା ତୀକ୍ଷ୍ଣ ଛୁରିକା ଦ୍ୱାରା ଆଘାତ କଲେ ଦାସଗୁପ୍ତାଙ୍କ ବକ୍ଷ ଦେଶରେ । ମୁହୂର୍ତ୍ତକ ମଧ୍ୟରେ ଦାସଗୁପ୍ତା ଘରର ଅଗଣା ଉପରେ ଚିତ୍କାର କରି ମଡ଼ିଗଲେ । ତାଙ୍କ ଚିତ୍କାର ଶୁଣି ଘର ଭିତରୁ ପ୍ରଶାନ୍ତ ତାଙ୍କୁ ସାହାଯ୍ୟ କରିବା ପାଇଁ ଦଉଡ଼ି ଆସିଥିଲେ ମାତ୍ର ସେ ମଧ୍ୟ ହିମାଂଶୁଙ୍କ ତୀକ୍ଷ୍ଣ ଛୁରିକାର ଆଘାତରୁ ନିଜକୁ ବଞ୍ଚାଇ ପାରି ନଥିଲେ । ପାଗଳପ୍ରାୟ ହିମାଂଶୁ, ପ୍ରଶାନ୍ତଙ୍କ ବକ୍ଷରେ ଛୁରୀରେ ଆଘାତ କଲେ । ପ୍ରଶାନ୍ତ ସେଇଠି, ଦାସଗୁପ୍ତାଙ୍କ ରକ୍ତାକ୍ତ ଶରୀର ପାଖେ ଟଳି ପଡ଼ିଲେ । ଗୃହର୍ଣ୍ଣ ଗୃହର୍ଣ୍ଣ ଗୋଟିଏ ମୁହୂର୍ତ୍ତରେ ଦୁଇଜଣଙ୍କ ପ୍ରାଣବାୟୁ ଉଡ଼ିଗଲା । ସାରା ପରିବାର ତଟସ୍ଥ, ମୂକ ଆଉ କିଂକର୍ତ୍ତବ୍ୟବିମୂଢ଼ ।

ଅନ୍ଧାରର ସୁଯୋଗ ନେଇ ହିମାଂଶୁ ଘଟଣାସ୍ଥଳରୁ ନିଜ ସାଇକେଲରେ ବସି ପଳାଇ ଯାଉଥିବା ସମୟରେ ତାଙ୍କୁ ଅଟକାଇବାକୁ ଚେଷ୍ଟା କରିଥିବା ରିକ୍ସାବାଲା ମଧ୍ୟ ଆଘାତପ୍ରାପ୍ତ ହେଲା ।

ଇନସ୍‌ପେକ୍ଟର ବୋଷ, ସମସ୍ତ ଘଟଣା ଶୁଣିଲା ପରେ, ହତ୍ୟାକାରୀକୁ ଧରିବା ପାଇଁ ସମସ୍ତ ବନ୍ଦୋବସ୍ତ କଲେ । କଲିକତା ଅଭିମୁଖୀ ସମସ୍ତ ଟ୍ରେନ୍, ବସ୍ ଚେକିଂ ଚାଲିଲା । ଏସ୍.ପି. ସାହେବ ନିଜେ ଏହାର ତଦାରଖ କଲେ । ହତ୍ୟାକାରୀ ରହୁଥିବା ଘର, ଦୋକାନ ସିଲ୍ କରାଗଲା । ମାତ୍ର ହତ୍ୟାକାରୀ ସମସ୍ତଙ୍କ ଆଖିରେ ଧୂଳିଦେଇ ଭୁବନେଶ୍ୱର ନଗରୀରୁ ପଳାୟନ କଲା, ପରଦିନ ସକାଳ ହେବା ପୂର୍ବରୁ । ହତ୍ୟାକାରୀ ଭୁବନେଶ୍ୱର ସହରଠାରୁ ବହୁ ଦୂରକୁ ଚାଲିଯାଇଥାଏ । ଦୁଇଟି ହତ୍ୟାକାଣ୍ଡର ହତ୍ୟାକାରୀକୁ ଧରିବା ପାଇଁ ଜନସାଧାରଣରେ ପ୍ରବଳ ଦାବି । ରାସ୍ତା କଡ଼ରେ ସନ୍ଧ୍ୟାବେଳେ ହତ୍ୟାକାଣ୍ଡ ।

ଇନସ୍‌ପେକ୍ଟର ବୋଷ, କାହା କଥାରେ ବିଚଳିତ ନ ହୋଇ ମୋ' ନିର୍ଦ୍ଦେଶ ମୁତାବକ ତଦନ୍ତ କାର୍ଯ୍ୟ ଚାଲୁ ରଖିଲେ । ହତ୍ୟାକାରୀର

ଘର ସର୍ଚ୍ଚ କଲାବେଳେ ସେ ପାଇଥିଲେ ତା'ର ଗୋଟିଏ ପାସପୋର୍ଟ ସାଇଜ୍ ଫଟୋଗ୍ରାଫ୍ । ପ୍ରତ୍ୟେକ ଖବରକାଗଜରେ ହତ୍ୟାକାରୀର ଫଟୋ ପ୍ରକାଶ ପାଇଲା । ପୁଲିସ ତରଫରୁ ହତ୍ୟାକାରୀକୁ ଧରାଇ ଦେଲେ ଉପଯୁକ୍ତ ପୁରସ୍କାର ମିଳିବ ବୋଲି ମଧ୍ୟ ଘୋଷଣା ପ୍ରକାଶ ପାଇଥାଏ । ମାତ୍ର ହତ୍ୟାକାରୀ କାହିଁ ? ତଦନ୍ତକାରୀ ଇନସପେକ୍ଟର ଭୁବନେଶ୍ୱରରୁ କଲିକତା ଗଲେ ଏବଂ ଜାଣିବାକୁ ପାଇଲେ ଯେ ହତ୍ୟାକାରୀ ଘରତରୁ ପୂର୍ବବଙ୍ଗକୁ ଚାଲିଯାଇଛନ୍ତି । ହତ୍ୟାକାରୀକୁ ଧରିବା ଆଶା ତାଙ୍କ ମନରେ ମଉଳି ଗଲା ।

ପ୍ରାୟ ମାସକ ପରେ, ହତ୍ୟାକାରୀ ହିମାଂଶୁ ଭୁବନେଶ୍ୱର ସହରରୁ କଲିକତାକୁ ପଳାଇବାପରେ କିଛିଦିନ ପାଇଁ କଲିକତା ଏବଂ ଅନ୍ୟ ଆଡ଼େ ବୁଲିବୁଲି କଲେ । ତାଙ୍କ ମନରେ ଚିନ୍ତା ହେଲା, ଭୁବନେଶ୍ୱର ଫେରିଆସି ହତ୍ୟା ଘଟଣା ବିଷୟରେ ବୁଝିବା ପାଇଁ । ପୁଲିସ କ'ଣ ଏତେଦିନକାଳ ତାଙ୍କୁ ଖୋଜୁଥିବ ? ଏଥିମଧ୍ୟରେ ସେ ତାଙ୍କର ବେଶ ପୋଷାକରେ ପରିବର୍ତ୍ତନ କରି ନେଇଥିଲେ । ମୁହଁରେ ଦାଢ଼ି, ଆଖିରେ ଚଷମା ଇତ୍ୟାଦି । କଲିକତା ନଗରୀରୁ ସେ ଭୁବନେଶ୍ୱର ଆସିବା ପୂର୍ବରୁ ସିଧା ଯାଇଥିଲେ ଜଗନ୍ନାଥଧାମ ପୁରୀ ସହରକୁ । ପୁରୀରେ କେତେ ସମୟ କଟାଇଲା ପରେ ଗୋଟେ ପ୍ରାଇଭେଟ୍ ବସ୍‌ରେ ଫେରୁଥିଲେ ଭୁବନେଶ୍ୱର ।

ପ୍ରାଇଭେଟ୍ ବସ୍ ପୁରୀ ଛାଡ଼ିଲା ପରେ, ପିପିଲି ଛକରେ ଲୋକମାନଙ୍କୁ ଓହ୍ଲାଇ ଦେବା ପାଇଁ ଅଳ୍ପ ସମୟ ପାଇଁ ଅଟକି ଥିଲା । ହିମାଂଶୁ ସେଇ ଅଳ୍ପ ସମୟ ଭିତରେ ଗାଡ଼ିରୁ ଓହ୍ଲାଇ ନିକଟସ୍ଥ ପାନ ଦୋକାନରୁ ଖଣ୍ଡେ ସିଗାରେଟ୍ କିଣି ପିଇବାକୁ ଆରମ୍ଭ କରିଥିଲେ । କିଏ ଜାଣିଥିଲା, ଜଣେ ଅବସରପ୍ରାପ୍ତ ଜଓ୍ୱାନର ଆଖି ତାଙ୍କ ଉପରେ ପଡ଼ିଯିବ ବୋଲି ! ଅବସରପ୍ରାପ୍ତ ସୈନିକ ହେଲେ ମଧ୍ୟ ତାଙ୍କର ମନରେ ଥିଲା ସୈନିକର ଟ୍ରେନିଂ । ଅଳ୍ପଦିନ ତଳେ ସେ ଦେଖିଥିଲେ ହତ୍ୟାକାରୀର ଫଟୋ ବିଭିନ୍ନ ପତ୍ର ପତ୍ରିକାରେ । ହିମାଂଶୁକୁ ସିଗାରେଟ୍ କିଣୁଥିବାର

ଦେଖି ସେ ଚିହ୍ନି ପାରିଲେ, ମନେମନେ ପତ୍ରିକାରେ ବାହାରିଥିବା ଫଟୋ ସହିତ ତୁଳନା କରିନେଲେ । ତାଙ୍କ ହାତରେ ସମୟ ଖୁବ୍ କମ୍ ଥିଲା । ସେ କାଳ ବିଳମ୍ବ ନକରି, ପାଖରେ ପହରା ଦେଉଥିବା କନେଷ୍ଟବଲଙ୍କୁ ତାଙ୍କର ସନ୍ଦେହ ବିଷୟରେ କହିଲେ ।

ଦୁଇଜଣ କନେଷ୍ଟବଲ ସନ୍ଦେହରେ ହିମାଂଶୁଙ୍କୁ ଅଟକାଇ ଥିଲେ । ହିମାଂଶୁ ବହୁ ଦମ୍ଭୋକ୍ତି ଦେଖାଇଲେ । ପାସେଞ୍ଜରମାନେ ଗାଡ଼ି ଛାଡ଼ିବାରେ ବିଳମ୍ବ ଘଟୁଥିବା ହେତୁ ପାଟିକଲେ । ମାତ୍ର କନେଷ୍ଟବଲ ଆଉ ଅବସରପ୍ରାପ୍ତ ସୈନିକ ମିଳି ହିମାଂଶୁଙ୍କୁ ପିପିଲିଥାନାକୁ ଆଣିଥିଲେ । ଥାନାରେ ପହଞ୍ଚିଲା ପରେ ହିମାଂଶୁ ସବୁ ମାନିଗଲେ । ତଦନ୍ତକାରୀ ଇନ୍‌ସ୍‌ପେକ୍ଟର ବୋଷ୍ ଖବର ପାଇ ହିମାଂଶୁଙ୍କୁ ଗିରଫ କଲେ ।

ଦୁଇଜଣଙ୍କୁ ଅତି ନିର୍ମମ ଭାବେ ହତ୍ୟା କରିଥିବା ଅଭିଯୋଗରେ ହିମାଂଶୁଙ୍କୁ ପୁଲିସ କୋର୍ଟକୁ ଚାଲାଣ କଲେ । ବହୁଦିନ ଧରି କୋର୍ଟରେ ଏହି ଡବଲ ମର୍ଡ଼ର କେସ୍ ଚାଲିଲା । ଶେଷକୁ କୋର୍ଟ ରାୟ ଦେଲେ, ହିମାଂଶୁଙ୍କୁ ଆଜୀବନ କାରାଦଣ୍ଡ ଭୋଗ କରିବା ପାଇଁ ।



# ପ୍ରେତ ପୀରଙ୍କରୁ ମର୍ଡ଼ର

ନିସ୍ତବ୍ଧ ରାତିର ଘନ ଅନ୍ଧକାର ମଧ୍ୟରେ ପାହାଡ଼ ତଳ ଗୋଟେ କନ୍ଧ ବସ୍ତି—'କୁଲୁ ରୁକୁମା' ଟି ଶୋଇପଡ଼ି ଥାଏ। ମଝିରେ ମଝିରେ ମହାବଳ ବାଘର ହେଣ୍ଟାଳ ଗୋଟେ ଗାଁଟିର ଗୁଡ଼ିକୁ ଦୁଲୁକାଇ ଦେଉ-ଥାଏ। ମହାବଳର ହେଣ୍ଟାଳ, ଝିଙ୍କାରିର ଝିଁ ଝିଁ ଶବ୍ଦ କମ୍ପା ରହି ରହି ଅଣ୍ଡିରା ବଲୁଆର ବକଟାଳ ଶବ୍ଦ କପୁର୍ଗିର ମନ ଭିତରେ ଟିକଏ ହେଲେ ଭୟ ସଞ୍ଚାର କରି ପାରିନଥିଲା। କନ୍ଧ ବସ୍ତିର ପୂର୍ବ କୋଣରେ ତାର ଗୋଟିଏ ମାଟିଘର। ମାଟିଘର ହେଲେ ବି ବେଶ୍ ପରିଷ୍କାର, ପରିଚ୍ଛନ୍ନ। ବାହାରେ ଗୋଟିଏ ଅଗଣା। ପଛପଟେ ଗାଈ ଗୁହାଳ। ଗୁହାଳରେ ଦଇଟା ବଳଦ, ଗୋଟେ ପଠ ମଇଁଷି, ଗୁରିଟା ମେଣ୍ଢା ଆଉ ମେଣ୍ଢାଛୁଆ। କପୁର୍ଗିର ଶୋଇଲା ଘର ଆଉ ଗୁହାଳ ମଝିରେ ଗୋଟିଏ ଖାଟିମାଟିର କାନ୍ଥ। କାନ୍ଥ ଦେହରେ ଗୋଟେ ଝରକା। ସେଇ ଝରକା ଦେଇ, ରାତିରେ କପୁର୍ଗି ଦେଖେ କଲରାପଟିଆ ତା' ମେଣ୍ଢାକୁ ଟାଣିବାକୁ ବସିଛି ନା ନାହିଁ। ଆଜ ଜନ୍ତୁ ତା' ମନ କୁଆଡେ ଲାଗୁନି। ପାହାଡ଼ କାନ୍ଧି ଉପରେ ମହାବଳର ହେଣ୍ଟାଳ ତା' ମନରେ ଭୟ ତୋଳୁନି। ସେ ତାର କବାଟକୁ ଆଉଜାଇ ଦେଇ ଅନ୍ଧାର ଭିତରେ ଅପେକ୍ଷା କରିଥାଏ ଜଣକ ଆଗମନକୁ। ବାହାରେ ଗୁଇ ଆଲୁଅ। ଶାଳଗଛର ପତ୍ରର ଫାଙ୍କରେ ଜହ୍ନ ଆଲୁଅ ଝଲଝଣ୍ଡୁଳି ଶୋଭା ସୃଷ୍ଟି କରିଛି। ଆଷାଢ଼ ମାସର କଳାହାଣ୍ଡିଆ ମେଘ ଏବର୍ଷ ତାଙ୍କ ଗାଁ ମୁଣ୍ଡ ପାହାଡ଼ ଉପର ଦେଇ ଭସିଯାଉଛି। ବର୍ଷା ନାହିଁ କି କଳାହାଣ୍ଡିଆ ମେଘର ଗର୍ଜନ ନାହିଁ।

କର୍ପୂରୀର ଦ୍ୱିତୀୟ ପକ୍ଷ ସ୍ୱାମୀ ଛବି, ଗାଁ ଟୋକାଙ୍କ ସଙ୍ଗେ ହାଣ୍ଡିଆ ଖାଇ ଯଜ୍ଞ ଦେଖିବାକୁ ଆର ଗାଁକୁ ଯାଇଛି । ଫେରିବ କାଲି ସକାଳେ । ଘରେ ଏକା କର୍ପୂରୀ । ମନରେ ଅସରନ୍ତି ଆଶା, ଉନ୍ମାଦନା ନେଇ ସେ ଅପେକ୍ଷା କରିଛି ମାଲୁ କନ୍ଧକୁ । ମାଲୁ କନ୍ଧ ତା' ଗାଁ ପିଲା । ବର୍ଷକ ତଳେ ତା' ପାଖେ ହଳିଆ କାମ କରୁଥିଲା । ବାଇଶ ବର୍ଷର ଗଜାଟୋକା ମାଲୁ, କର୍ପୂରୀର ମନ କିଣି ନେଇଥିଲା । ଦ୍ୱିତୀୟ ପକ୍ଷ ସ୍ୱାମୀ ସବୁଦିନ ରାତିରେ ହାଣ୍ଡିଆ ଖାଇ ମାତାଲ ହୁଏ । ଘରେ ପଶୁ ନପଶୁଣୁ କର୍ପୂରୀ ଉପରେ ଆରମ୍ଭ କରେ ବିଧା ଗୋଇଠା ।

କର୍ପୂରୀର ବାପା ଅନନ୍ତ ଜାନୀ ଥିଲା କୁଲୁରୁକୁମା କନ୍ଧ ବସ୍ତିର ମୁରବୀ । ଆଠମାଣ ଜମିର ମାଲିକ । ହଳେ ବଳଦ । ଦି'ପଟ ପୋଡ଼ୁ । ଅଧା ବୟସରେ ସେ ରୋଗାକ୍ରାନ୍ତ ହେଲା । ଗାଁ ଠାକୁରାଣୀ ତାକୁ ରକ୍ଷା କରି ପାରିଲେନି । ସେ ସେଇ ରୋଗରେ ମୃତ୍ୟୁ ବରଣ କଲା । ବାପ ଅନନ୍ତ ଜାନୀ ମଲା ବେଳକୁ କର୍ପୂରୀ ଛୋଟ ପିଲା । ବାପ ମଲାପରେ ମାଆ ଆଉ ଜଣକ ସାଙ୍ଗେ ସାଙ୍ଗ ହୋଇ ଚାଲିଗଲା । ମା ବାପ ଛେଉଣ୍ଡ କର୍ପୂରୀ, ମାଉସୀ ଘରେ ରହି ବଣ ଜଙ୍ଗଲରେ ବୁଲି ବଢ଼ିବାକୁ ଲାଗିଲା । ଛୋଟ ଝିଅ କର୍ପୂରୀ ବଡ଼ ହେଲା । ମଉସା ମାଉସୀ ବର ଖୋଜି ବୁଲିଲେ । ଶେଷକୁ କର୍ପୂରୀ ପାଖ କନ୍ଧ ଗାଁ'ର ଯୋଗେଶ୍ୱରକୁ ବାହା ହୋଇ ଘର କଲା । ମାଉସୀ ଘରୁ ଫେରି ନିଜ ଗାଁରେ ବାପ ସମ୍ପତ୍ତି ଚାଷ କଲା । ବାପ ଘରେ ସ୍ୱାମୀ ସଙ୍ଗେ ଘର କଲା ।

ମାତ୍ର ଦୁଇବର୍ଷ ପରେ, କର୍ପୂରୀ ଉପରେ ବିଧାତାର କୋପଦୃଷ୍ଟି ପଡ଼ିଲା । ଯୋଗେଶ୍ୱର ଭୟାନକ ଟି.ବି. ରୋଗରେ ଆକ୍ରାନ୍ତ ହେଲା । କନ୍ଧ ଗାଁ'ର ବଇଦ ପାହାଡ଼ ଉପରୁ ଚେର ମୂଳ ଆଣିଦେଲା । କର୍ପୂରୀର ସବୁ ଚେଷ୍ଟା ସତ୍ତ୍ୱେ ଯୋଗେଶ୍ୱର ତା'ଠାରୁ ବିଦାୟ ନେଇ ଚାଲିଗଲା । କିଛିଦିନ ଏକୁଟିଆ ରହିଲାପରେ କର୍ପୂରୀ ପୁଣି ଛବିକୁ ଦ୍ୱିତୀୟପକ୍ଷ ସ୍ୱାମୀ ହିସାବରେ ଗ୍ରହଣ କରି ଘର କଲା ।

ବିବାହର ପାଞ୍ଚବର୍ଷ ପୂରି ଯାଇଥିଲେ ବି କର୍ପୂରୀ କୋଳରେ

ଛୁଆଟିଏ ଆସିନଥିଲା । ସବୁବେଳେ ସେ ମନମାରି ବସେ । ବସ୍ତିର ତା' ସାଙ୍ଗର ଝିଅମାନେ ଦୁଇ ତିନଟାର ମା' ହେଲେଣି । ପୋଡ଼ା କପାଳକୁ ତା' କୋଳ ପୂରୁନ । ସ୍ୱାମୀକୁ କୁହେ, ମାତ୍ର ଛବିର ସେଥିପ୍ରତି ନଘା ନଥାଏ । ସେ ଜଙ୍ଗଲରୁ କାଠ କାଟେ, ହଳରେ ହଳ କରେ, ସନ୍ଧ୍ୟା ହେଲେ ହାଣ୍ଡିଆ ପିଇ ଶୋଇଯାଏ, ନହେଲେ କାଠ ଫାଳିଆରେ କର୍ପୁଂଶ୍ରି ପିଠିକୁ ଲାଲ୍ କରେ ।

ଦି'ବର୍ଷ ତଳେ କର୍ପୁଂଶ୍ରି ସେଇ ଗାଁର ମାଲୁକୁ ତା' ଘରେ ହଳିଆ କରି ରଖିଲା । ତାର ଶୋଇଲା ଘର ପାଖ ଘରେ ମାଲୁ ରୁହେ । ମାଲୁ ବୟସରେ ଶ୍ରେଷ୍ଠ ହେଲେ ବି ଦୁଇଜଣଙ୍କ ମଧ୍ୟରେ ସ୍ନେହ ବଢ଼ିଉଠେ । ଛବିର ଅନୁପସ୍ଥିତିରେ ମାଲୁକୁ ଟାଣିନିଏ କର୍ପୁଂଶ୍ରି ତା' ଘର ଭିତରକୁ । ପ୍ରଥମେ ପ୍ରଥମେ ମାଲୁ ଡରିଯାଇ ଥିଲା । ଅଳ୍ପଦିନ ଭିତରେ ସେ ସବୁ ତାର ଦେହସୁହା ହୋଇଗଲା । କେବଳ ବେଳକାଳ ଉଣ୍ଡି ଯିବାଆସିବା କରିବା କଥା । ତାଙ୍କର ଏଇ ଗୁପ୍ତପ୍ରୀତି ବେଶୀ ଦିନ ଛବି ଆଖିରେ ଲୁଚି ରହି ପାରିଲା ନାହିଁ । ଦିନେ ଛବି ଜଙ୍ଗଲରୁ କାଠ ବୋଝେ ଧରି ପାହାଡ଼ ତଳେ ବୋହିଯାଉଥିବା ଝରଣା ପାରି ହୋଇ ଫେରିବାବେଳେ ଦେଖିଲା, କର୍ପୁଂଶ୍ରି ଆଉ ମାଲୁ ବାଡ଼ପଟ ଗୁହାଳପାଖେ ଅଶ୍ଳୀଳତାର ଶେଷ ଭାଗରେ ପହଞ୍ଚି ଯାଇଛନ୍ତି । ସେଇଦିନ ସେ ବସ୍ତିରେ ଫେଗାଦ ହେଲା । ବସ୍ତିର ଲୋକମାନେ ସନ୍ଧ୍ୟାବେଳକୁ ଗାଁ ମୁଣ୍ଡ ଶାଳଗଛ ତଳେ ବସିଲେ । ବିଚାର ହେଲା । ବିଚାର ପରେ ମାଲୁ, କର୍ପୁଂଶ୍ରି ଘରୁ ଚାକିରି ଛାଡ଼ି ଯିବାକୁ ବାଧହେଲା । ସେଇଦିନୁ ସେ କର୍ପୁଂଶ୍ରି ଘରକୁ ଆସେନି । ଗଲା ଅଇଲା ବେଳେ ଯାହା ଖାଲି ମୁହଁ ଚୁହାଁଚୁହିଁରେ ମନକଥା କୁହାକୁହି ହେବାଛଡ଼ା ବାଟ ନଥାଏ ।

ବର୍ଷକ ପରେ, ଆଷାଢ଼ ମାସର କୃଷ୍ଣପକ୍ଷ ଅଷ୍ଟମୀ, ସକାଳୁ ସକାଳୁ ଛବି ବଜାର କରିଥାଏ ଆଉ ଗାଁକୁ ସଞ୍ଜ ହେଉ ଯିବ । କର୍ପୁଂଶ୍ରି ଏକଥା ଜାଣିଥିଲା । ଦି'ପ୍ରହରରେ ଗାଁ ମୁଣ୍ଡ କୂଅ ପାଖକୁ ପାଣି ଆଣିବାକୁ ଗଲାବେଳେ ତା'ର ଦେଖାହେଲା ମାଲୁ ସାଙ୍ଗେ । ମାଲୁକୁ

ହାତଠାରି କର୍ପୂରୀ କୁଅ ପାଖ ଶାଳଗଛ ମୂଳକୁ ଡାକିଲା । ମାଲୁକୁ ଏତେଦିନ ପରେ ପାଖରେ ପାଇ ମନକଥା ଖୋଲି କହିଲା ।

ସେଇଦିନ ସନ୍ଧ୍ୟାବେଳକୁ ଛବି ଗାଁ ଟୋକାଙ୍କ ସଙ୍ଗେ ଯକ୍ଷ ଦେଖିବାକୁ ଚାଲିଗଲା । ଗଲାବେଳେ କର୍ପୂରୀକୁ କହିଗଲା ଯେ,ସେ ତା' ପରଦିନ ସକାଳୁ ଫେରିବ । ରାତିରେ ଫେରିବା ନିରାପଦ ନୁହେଁ । ପାହାଡ଼ ପାରି ଆରପଟ କନ୍ଧ ବସ୍ତିରେ ଯକ୍ଷ । ବାଟରେ ଘନ ଜଙ୍ଗଲ, ମହାବଳ ମାଡ଼ିଥାଏ । ଗଣ୍ଡେ ଦିଅଣ୍ଡା ପଣ୍ଡା ମଇଁଷି ମରିଲେଣି । ସେଇଥି ଲାଗି ସନ୍ଧ୍ୟା ହେଲେ କୁଲୁରୁକୁମ୍ପାର କନ୍ଧବସ୍ତି ନିସ୍ତବ୍ଧ ହୋଇଯାଏ । ଘରର ଆଲୁଅ ଲିଭିଯାଏ ।

ସେଦିନ ବସ୍ତି ନିସ୍ତବ୍ଧ ହେଲାପରେ, ମାଲୁ ତା' ଶୋଇବା ଘରୁ ବାହାରି ପଡ଼ିଲା । କର୍ପୂରୀ କହିଛି ତାକୁ ଅପେକ୍ଷା କରିଥିବ । ଛବି ଘରେ ନାହିଁ । ଫେରୁ ଫେରୁ ପରଦିନ ସକାଳ । ମାଲୁ ଶାଳବଣ ଛାଇ ଅନ୍ଧାର ଭିତରେ ରାତି ଅଭିସାରରେ ବାହାରିପଡ଼ିଲା । ମାତ୍ର କେତେଟା ମିନିଟ୍‌ରେ ପହଞ୍ଚିଲା କର୍ପୂରୀ ପାଖେ । ବେଶ୍ ଛୋଟ ଘର ଭିତରେ ଦୁଇଟି ପ୍ରାଣୀ । ଯୁଗ ଯୁଗ ଧରି ଯେପରି ଜଣେ ଜଣକୁ ଚାହିଁ ବସିଥିଲା । ରାତିର ଅନ୍ଧାର ଭିତରେ ମନର ହେକ ମରିଗଲା । ମାଲୁ କହିଲା ଫେରିଯିବ ସେଇ ଅନ୍ଧାର ଭିତରେ, ମାତ୍ର କର୍ପୂରୀ ତାକୁ ଛାଡ଼ିବାକୁ ନାରାଜ । କେତେଦିନ ପରେ, କେତେଟା ମୁହୂର୍ତ୍ତ ପାଇଁ ସେ ପାଇଛି ମାଲୁକୁ । ଛାଡ଼ିଦେବାକୁ ମନ ବଳିଲାନି । ଦୁଇଜଣ ଯାକ ଶୋଇପଡ଼ିଲେ । କିଏ ଜାଣିଥିଲା ଏମିତି ଗୋଟେ ଅଘଟଣ ଘଟିବ ।

ଯକ୍ଷ ଦେଖିବାକୁ ଯାଇ ଛବି ଆଉ ତା' ସାଙ୍ଗମାନେ ଫେରି ଆସିଲେ । ଗାଁରେ ପହଞ୍ଚିଲାବେଳକୁ ରାତି ଅଧ ଉପରେ । ଛବି ଘର ପାଖକୁ ଯାଇ କବାଟ ଠକ୍‌ଠକ୍ କଲା । ବାହାରେ ତା' ଠକ୍‌ଠକ୍ ଆବାଜ ଭିତରେ ମାଲୁ ଛାତିରେ ପିଟଣାରେ ପିଟିଲା ପରି ଲାଗିଲା । ସେ ଭୟରେ ଥରିବାକୁ ଲାଗିଲା । ମାତ୍ର କର୍ପୂରୀ ତାକୁ ସାହସ ଦେଇ ଘର

କଣରେ ଥିବା ମାଟି ଉମେଦ୍ବାଁ ପଛପଟେ ଲୁଚପିବାକୁ କହି କବାଟ ଖୋଲିଲା । ମାଟି ଉମେଦ୍ବାଁ ପାଖେ ଲୁଚିଲାବେଳେ ମାଲୁ ହାତରେ ଗୋଟେ ଛୁରୀ ପଡ଼ିଲା । ବୁଢ଼ଗଲା ଲୋକ କୁଠାଖିଅକୁ ଆଶ୍ରାକଲା ପରି, ମାଲୁ ଛୁରୀଟାକୁ ଆଶ୍ରାକରି ଉମେଦ୍ବାଁ ପଛପଟେ ଲୁଚି ବସିଲା ।

କବାଟ ଖୋଲିଲା ପରେ ଛବିର ପ୍ରଥମ ପ୍ରଶ୍ନ ହେଲା ଘର ଭିତରେ ଖସ୍‌ଖସ୍ ଶବ୍ଦ କୁଆଡ଼ୁ ଆସୁଥିଲା । ସ୍ୱାମୀ କଥାର ଉତ୍ତର ଦେଇ କର୍ପୁରୀ କହିଲା, ବଣୁଆ ମୂଷା ଗୁଡ଼ାକ ଗୃହଜଳବଣା ଭିତରେ ବୋଧେ ପଶିଛନ୍ତି । ସେଇମାନେ ଖଡ଼୍‌ଖାଡ଼୍ ହେଉଥିବେ । ମାତ୍ର ଛବିର ସନ୍ଦେହ ଠିକ୍ । ସେ ଆଉ କିଛି ନପଚାରି ବାହାର ପିଣ୍ଡାରେ ଖାଇବସିଲା । ଖାଇ ସାରିଲା ପରେ ସେ ହଠାତ୍ ବାହାରପଟୁ ଝିଞ୍ଜିରି ଲଗାଇ ଦେଇ ତା' ପାଖ ପଡ଼ୋଶୀକୁ ଡାକିବାକୁ ଗଲା ।

ତା' ଡାକ ଶୁଣି କେତେଜଣ ଉଠିଆସିଲେ । ସମସ୍ତଙ୍କୁ ଘର ଦେଖାଇ ଦେଇ ଛବି କହିଲା ଯେ, ମାଲୁ ତା' ଘରେ ପଶିଛି । ସମସ୍ତଙ୍କ ଆଗରେ ସେ କବାଟ ଖୋଲି ତାକୁ ଧରେଇ ଦେବା ପାଇଁ ଝିଞ୍ଜିରି ଖୋଲିବା ମାତ୍ରେ, ଘର ଭିତରୁ ମାଲୁ ଛବି ଗୁଡ଼ିକୁ ଲକ୍ଷ୍ୟ କରି ହାତରେ ଧରିଥିବା ଛୁରୀରେ ଆଘାତ କଲା । ଛୁରୀମାଡ଼ ଖାଇଲା ପରେ ବି ଛବି ମାଲୁକୁ ଧରି ପକାଇଥିଲା । ମାତ୍ର ମାଲୁ ତାକୁ ଠେଲିଦେଇ ସେଇ ଅନ୍ଧାର ଭିତରେ ପାହାଡ଼ ଅଡ଼େ ଯିବାର ଦେଖି କର୍ପୁରୀ ମଧ୍ୟ ତା' ପଛେ ପଛେ ପାହାଡ଼ ଆଡ଼େ ଗୁଳିଗଲା ।

ବସ୍ତି ଲୋକ ନଦୁଆ ଆଖିରେ ଘଟଣାଟି କଅଣ ବୁଝିଲା ବେଳକୁ ତାଙ୍କ ଆଖି ଆଗରେ ଛବି ଛଟପଟ ହୋଇ ମୃତ୍ୟୁବରଣ କଲା । ରାତିର ସେଇ ଅନ୍ଧକାର ମଧ୍ୟରେ କର୍ପୁରୀ ଆଉ ମାଲୁ ମିଳେଇ ଗଲେ । ସକାଳୁ ସକାଳୁ ଗ୍ରାମରକ୍ଷୀ ଥାନାରେ ଖବର ଦେଲା । ଥାନାବାବୁ ମର୍ଡର କେସ୍ କଲେ । ମାତ୍ର ଆସାମୀ କାହିଁ ?

ଦିନେ ଗଲା । ଦୁଇଦିନ ଗଲା । ବସ୍ତି ଲୋକ ଭାବିଲେ, ପାହାଡ଼ ଭିତରେ ମହାବଳ ସେ ଦୁଇଜଣଙ୍କୁ ନିଶ୍ଚୟ ଖାଇଦେଇଛି । ମାତ୍ର ମହାବଳ ସେମାନଙ୍କୁ ଖାଇନଥିଲା । ଦୁହେଁ ଦୁଇଦିନ ପରେ ଫେରିଲେ । ଅବଶ୍ୟ ଫେରିଲେ ଘରକୁ ନୁହେଁ ଜେଲ୍ ଭିତରକୁ ।



## ମହନ୍ତ ପରାଶର ମର୍ଡ଼ର

ଶ୍ରୀକ୍ଷେତ୍ରରେ ବସନ୍ତ ଉତ୍ସବର ଶେଷ ପର୍ଯ୍ୟାୟ । ସେ ବର୍ଷ ବସନ୍ତ ରାସ ପାଇଁ ଉତ୍ତର ଭାରତୀୟ ଓ ମଧ୍ୟ ଭାରତୀୟ ଯାତ୍ରୀମାନଙ୍କ ବିଶେଷ ସମାଗମ ଯୋଗୁଁ ଶ୍ରୀକ୍ଷେତ୍ରର ପ୍ରତ୍ୟେକ ଗଳି କନ୍ଦି, ମଠ ମନ୍ଦିର ମୁଖରିତ ହୋଇ ଉଠିଥାଏ । ଶ୍ରୀମନ୍ଦିରରେ ଅହେତୁକ ସମାଗମ ପଣ୍ଡା, ପଡ଼ିଆରୀ, ସେବକଙ୍କ ମନରେ ଆନନ୍ଦ ଉଲ୍ଲାସ ଖେଳେଇ ଦେଇଥାଏ । ସ୍ୱର୍ଗଦ୍ୱାର ସଂଲଗ୍ନ ଜ୍ୟୋତିରାଜ ମଠ, ନୀଳ ସମୁଦ୍ରର ଅନତିଦୂରରେ, ପଶ୍ଚିମା ଯାତ୍ରୀ ସମାଗମରେ ପୂରି ଉଠିଥାଏ । ମଠର ସୁନ୍ଦର ପ୍ରାକୃତିକ ପରିବେଶ ମଧ୍ୟରେ ରଘୁନାଥଜିଉଙ୍କ ମନ୍ଦିର । ଶ୍ୱେତ ମାର୍ବଲ ପଥରର ମନ୍ଦିର ଚଟାଣ । ମନ୍ଦିର ମଧ୍ୟରେ ଅଷ୍ଟଧାତୁ ନିର୍ମିତ ରଘୁନାଥଜିଉଙ୍କର ସୁନ୍ଦର ମୂର୍ତ୍ତି । ଠାକୁରଙ୍କ ସାମ୍ନାରେ ଭକ୍ତମାନଙ୍କ ପ୍ରାର୍ଥନାପାଇଁ ପ୍ରଶସ୍ତ ପ୍ରକୋଷ୍ଠ । ପ୍ରାର୍ଥନା ପ୍ରକୋଷ୍ଠକୁ ଲାଗି ପୁସ୍ତକାଗାର । ମନ୍ଦିର ପଶ୍ଚାଦ୍‌ଭାଗରେ ଶ୍ରୀ ଜିଉଙ୍କ ରନ୍ଧନଶାଳା, ଗନ୍ତାଘର । ମଠର ଚତୁଃପାର୍ଶ୍ୱରେ ମଲ୍ଲୀ, ଚମ୍ପା, ମାଳତୀ, ଟଗର ଲତାର ପୁଷ୍ପଉଦ୍ୟାନ । ମଲ୍ଲୀ, ମାଳତୀର ଭୁରୁଭୁରୁ ଗନ୍ଧରେ, ପାଖ ସ୍ୱର୍ଗଦ୍ୱାର ଶ୍ମଶାନର ଦଗ୍ଧ ଶବର ଉତ୍କଟ ଗନ୍ଧ ମନ୍ଦିର ପ୍ରାଙ୍ଗଣରେ ପ୍ରବେଶ କରିପାରେ ନାହିଁ । ତେଜସ୍ୱୀ ପରାଶର ରାମାନୁଜ ଦାସ ଜ୍ୟୋତି ମଠର ମହନ୍ତ ମହାରାଜ । ଜନସେବା, ଶାସ୍ତ୍ରଚର୍ଚ୍ଚା, ରଘୁନାଥଜିଉଙ୍କ ପୂଜାକୁହିଁ ଜୀବନର ବ୍ରତକରି ନେଇଥିଲେ, ମହନ୍ତ ପରାଶର ରାମାନୁଜ । ପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ତାଙ୍କର ଶେଷ ଜୀବନ ଯାପନ କରିବେ ବୋଲି ଚାରିଧାମ ମଧ୍ୟରେ ଶ୍ରେଷ୍ଠ ପୁରୀଧାମରେ ସେ ରହିଆସିଥିଲେ ବହୁଦିନ ଧରି ।

୧୯୭୭ ମସିହା ମାର୍ଚ୍ଚମାସ ୨୦ ତାରିଖ । ସମୟ ସକାଳ ନ' ଘଣ୍ଟା । ସବୁଦିନ ପରି ମହନ୍ତ ପରାଶର ରଘୁନାଥଜିଉଙ୍କ ପୂଜା ଅର୍ଚ୍ଚନାରେ ବ୍ୟସ୍ତ । ସକାଳ ଆରମ୍ଭ, ପୂଜା ସରୁ ସରୁ ପ୍ରାୟ ଦିନ ନ'ଟା ବାଜିଯାଇଥାଏ । ମଠରେ ଅନ୍ତେବାସୀ ଠାକୁରଙ୍କ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ । ଯାତ୍ରୀ, ଭକ୍ତମାନେ ମହନ୍ତ ମହାରାଜଙ୍କ ଠାରୁ ପ୍ରାତଃ ପ୍ରବଚନ ଶୁଣି ଫେରିଯାଇଥାନ୍ତି । ହଠାତ୍ ମହନ୍ତ ପରାଶରଙ୍କର ଆର୍ତ୍ତଚିତ୍କାର ମଠର ଶାନ୍ତ ସରଳ ବାତାବରଣକୁ ଆନ୍ଦୋଳିତ କରିଦେଲା । ପରାଶର ଆର୍ତ୍ତଚିତ୍କାର କରୁଥାନ୍ତି, "ରକ୍ଷାକର, ବାବାଜୀ, ବାବାଜୀ ଦୌଡ଼ିଆସ" । କୋଳାହଳ ଭିତରେ ଦେଖାଗଲା ମହନ୍ତ ମହାରାଜ ପ୍ରାଣ ବିକଳରେ ମନ୍ଦିରର ଗୋଟିଏ କୋଣରୁ ଆଉ ଗୋଟିଏ କୋଣକୁ ଧାବମାନ ହେଉଥାନ୍ତି । ତାଙ୍କ ପଶ୍ଚାଦଭାଗରେ ଜଣେ ପ୍ରୌଢ଼ ଆଉ ଜଣେ ଯୁବକ ତୀକ୍ଷ୍ଣ ଅସ୍ତ୍ର ସାହାଯ୍ୟରେ ତାଙ୍କ ଶରୀରର ବିଭିନ୍ନ ସ୍ଥାନରେ ଆଘାତ କରିବାରେ ଲାଗିଥାନ୍ତି । ଆତତାୟୀଙ୍କ ଉଗ୍ରମୂର୍ତ୍ତି ଆଗରେ ମଠର କର୍ମଚାରୀ, ଭକ୍ତବୃନ୍ଦ ଭୟରେ ମ୍ରିୟମାଣ ହୋଇ ପ୍ରାଣ ରକ୍ଷାକରିବା ଉଦ୍ଦେଶ୍ୟରେ ଏଣେତେଣେ ଧାଁ ଦଉଡ଼ କରୁଥାନ୍ତି । ମହନ୍ତଙ୍କ କରୁଣ ଆର୍ତ୍ତନାଦ ସ୍ୱର୍ଗଦ୍ୱାର ସଂଲଗ୍ନ ଅଞ୍ଚଳକୁ ପ୍ରକମ୍ପିତ କରିଦେଲା ।

ଅସମ୍ଭବ ଅଘଟଣ । ମଠାଧୀଶ ପରାଶରଙ୍କୁ ଆତତାୟୀମାନେ ମନ୍ଦିର ପ୍ରାଙ୍ଗଣରେ ହତ୍ୟାକଲେ । ସୁନ୍ଦର ଶୁଭ୍ର ମାର୍ବଲ ପ୍ରସ୍ତର ଚଟାଣ ତାଜା ଲାଲ ରକ୍ତରେ ରକ୍ତରଞ୍ଜିତ ହୋଇଉଠିଲା । ଆତତାୟୀଙ୍କ ମୁହଁରେ "ଜୟ ଶିବଶଙ୍କର" ଧ୍ୱନି । ପରାଶରଙ୍କ ଶରୀର ଚଟାଣ ଉପରେ ଲୋଟିପଡ଼ିବା ପରେ, ପ୍ରୌଢ଼ ଆଉ ଯୁବକ ଆତତାୟୀ ଦୁଇଜଣ ରକ୍ତରଞ୍ଜିତ ଅସ୍ତ୍ରଧାରଣ କରି ସମସ୍ତଙ୍କ ଆଖି ଆଗରେ ମନ୍ଦିର ପ୍ରାଙ୍ଗଣ ତ୍ୟାଗ କଲେ ।

ପ୍ରାଙ୍ଗଣ ତ୍ୟାଗ କରିବା ସମୟରେ ସେମାନେ ମୁହଁରେ "ବଂ ବଂ ଶିବଶଙ୍କର" ଉଚ୍ଚାରଣ କରୁଥାନ୍ତି । ସ୍ତବ୍ଧ, ଚକିତ ଭକ୍ତଗଣ ସେମାନଙ୍କ ପଳାୟନ ପରେ, ପରାଶରଙ୍କ ଲୋଟିପଡ଼ିଥିବା କ୍ଷତବିକ୍ଷତ

ଶରୀର ପାଖେ ପହଞ୍ଚିଥିଲେ । ମାତ୍ର ତାର କେତେ ସମୟ ପୂର୍ବରୁ ମହାନ୍ତ ମହାରାଜ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କେବଳ ରଘୁନାଥଜିଉଙ୍କ ସାମ୍ନାରେ ପଡ଼ି ରହିଥିଲା ତାଙ୍କର ସ୍ଥୂଳ କ୍ଷତବିକ୍ଷତ ଶରୀର । ରଘୁନାଥ-ଜିଉଙ୍କ ପୁଷ୍ପଲାଗି ପାଇଁ ପୁଷ୍ପ ଚୟନରେ ବ୍ୟସ୍ତଥିଲେ ପୂଜକ ଗୌରୀ-ଶଙ୍କର । ପୁଷ୍ପ ଉଦ୍ୟାନରେ ଗୁଣୁ ଗୁଣୁ ମନ୍ତ୍ରଗାଇ ପୁଷ୍ପଚୟନ କଲାବେଳେ, ପରାଶରଙ୍କ ଆର୍ତ୍ତଚିତ୍କାର ଶୁଣି ସେ ଧାଇଁ ଧାଇଁ ଆସିଥିଲେ ମନ୍ଦିର ପ୍ରାଙ୍ଗଣକୁ । ତା'ପରେ···।

ତାପରେ, ସେ ପହଞ୍ଚିଥିଲେ ପୁରୀ ଟାଉନ ଥାନାରେ । ଥାନାର ଭାରପ୍ରାପ୍ତ ଅଫିସରଙ୍କ ଆଗରେ ତାଙ୍କର ପ୍ରାଥମିକ ରିପୋର୍ଟ ଦେଇ-ଥିଲେ—

"ମୋର ନାମ ଗୌରୀଶଙ୍କର ମିଶ୍ର । ବୟସ ୨୩ । ପିତା—ସର୍ବେଶ୍ୱର ମିଶ୍ର । ମୁକାମ ବାଲିଦାଣ୍ଡିଆ । ଥାନା—ଗୋପିବଲ୍ଲଭପୁର । ଜିଲ୍ଲା—ମେଦିନାପୁର, ପଶ୍ଚିମ ବଙ୍ଗଳା—ହା. ସା. ଜ୍ୟୋତିରାଜ ମଠ, ଶଙ୍କରାଚାର୍ଯ୍ୟ ରୋଡ଼, ପୁରୀ ଟାଉନ । ଆଜି ତା ୨୦ । ୩ । ୭୭ ଦିନ ୧୧ ଘଣ୍ଟା ସମୟରେ ଜ୍ୟୋତିରାଜ ମଠରେ ଆପଣଙ୍କ ଆଗରେ ଏହି ରିପୋର୍ଟ କରୁଛି କି ମୁଁ ଆଜିକୁ ପ୍ରାୟ ୪ ବର୍ଷ ହେବ ଜ୍ୟୋତିରାଜ ମଠ, ପୁରୀ ସମୁଦ୍ର କୂଳରେ ପୂଜାରୀ କାମ କରୁଅଛି । ପରାଶର ରାମାନୁଜ ଦାସ ଏହି ମଠର ମହନ୍ତ ଅଟନ୍ତି । ରଘୁନାଥ ସାହୁ, ମାର୍କଣ୍ଡେଶ୍ୱର ସାହି, ପୁରୀ ଟାଉନ, ଆଜିକୁ ପ୍ରାୟ ୨ ମାସ ହେବ ଆମ ମଠରେ ମାଳି କାମ କରୁଛନ୍ତି । ଆଉ ଜଣେ କର୍ମଚାରୀ ଫେବୃୟାରୀ ମାସରୁ ଗ୍ରାମକୁ ଛୁଟିରେ ଯାଇଛନ୍ତି । ଆମ ମଠକୁ ବଙ୍ଗଳା, ବିହାର, ଉତ୍ତର ପ୍ରଦେଶ, ଓଡ଼ିଶାର ବିଭିନ୍ନ ଲୋକ ଠାକୁର ଦର୍ଶନ ପାଇଁ ଆସନ୍ତି । ଗତ କାଲି ୧୯-୩-୭୭ ଦିନ ପ୍ରାୟ ୧୧ । ୩୦ ମିନଟ୍ ସମୟରେ ମଠର ପୂଜା ଆରମ୍ଭ ହେଲା । ମନ୍ଦିର ଭିତରେ ମୁଁ ଆଳତି କରୁଥିଲି । ମହନ୍ତ ଘଣ୍ଟି ବଜଉ ଥିଲେ । ଆଉ ଦୁଇଜଣ ପୁରୁଷ ଯାତ୍ରୀ, ନାମ କହି ପାରିବି ନାହିଁ; ଠାକୁର ଦର୍ଶନ ପାଇଁ ଆସିଥିଲେ । ଆଉ ଜଣେ ମଧ୍ୟବୟସ୍କର ଲୋକ ଗୋଟିଏ ସାନ ପିଲା

ଓ ପ୍ରାୟ ୧୭।୧୮ ବର୍ଷର ଯୁବତୀ ଝିଅ ମନ୍ଦିର ଦ୍ୱାର ପାଖରେ ଗୋଟିଏ ବ୍ୟାଗ ଧରି ବସିଥିଲେ । ଉକ୍ତ ମଧ୍ୟବୟସ୍କ ଲୋକ ପାଖରେ ଗୋଟେ ଷ୍ଟୋଟ ଲଠି ଥାଏ । ଆଳନ୍ତି ପରେ, ପୁରୁଷ ଯାତ୍ରୀ ଦୁଇଜଣ ଚାଲିଗଲା ପରେ, ସେମାନେ ସେଠାରେ ଥିଲେ । ମହନ୍ତ ପ୍ରଣାମ କରି ଉଠିଲା ପରେ ଉକ୍ତ ମଧ୍ୟ ବୟସର ଲୋକ ମହନ୍ତଙ୍କୁ କହିଲା, "ଆପ୍‌କା ସାଥ କୁଛ୍ ଧରମକା ବାତ୍ କରନା ଚାହୀତାହୁଁ ।" ମହନ୍ତ କହିଲେ, "ହାମ୍‌ଲୋକ ସବ୍ ତିନ୍ ବଜେ ଉଠା ହୈ, ଆପ ଯାଇୟେ ଚାର୍ ବଜେକା ବାଦ୍ ଆଏଗା ।" ଏହା କହି ମହନ୍ତ ସାମ୍ନା ଗେଟ୍ ଆଡ଼କୁ ଗଲେ । ମୁଁ ମଧ୍ୟ ସେମାନଙ୍କୁ କହିଲି, "ଆପଲୋକ ଚାର୍ ବଜେ ଆଇୟେ ।" ତାପରେ ସେମାନେ ବାହାରି ଯିବାକୁ ବସିଲେ । ମୁଁ କବାଟ ବନ୍ଦ କରିବାକୁ ଗଲାବେଳେ ସେ ଯୁବତୀ ଜଣକ କହିଲା, "ତୁମ ଲୋକ ଖାଲି ଟଶାନେ ଚାହତେ ହୋ, ଶୋ—ଶୋ ।" ସେମାନେ ଚାଲିଗଲା ପରେ ମୁଁ କବାଟ ବନ୍ଦକଲି ।

ଆଜି ସକାଳୁ ପ୍ରାୟ ୯ ଘଣ୍ଟା ହେବ ମୁଁ ମନ୍ଦିରରେ ଠାକୁର ପୂଜା ସାରି ମନ୍ଦିର ପଛ ପାଖରେ ଥିବା ରୋଷେଇ ଘରକୁ ଆସିଲି । ମହନ୍ତ ମନ୍ଦିର ଦ୍ୱାର ପାଖରେ ବସି ମାଳ ଗୁନ୍ଥୁଥିଲେ । ମାଳି ରଘୁ ସାହୁ ମନ୍ଦିର ଆଗରେ ଥିବା ବଗିଚାରେ କାମ କରୁଥାଏ । ଏହି ସମୟରେ ହଠାତ୍ ମହନ୍ତ ଚିତ୍କାର କଲେ, "ବାବାଜୀ ଦୌଡ଼ଆ, ବାବାଜୀ ଦୌଡ଼ଆ ।" ମହନ୍ତଙ୍କ ପାଟିଶୁଣି ମନ୍ଦିର ଅଗଣା ଆଡ଼କୁ ଦଉଡ଼ି ଗଲି । ଅଗଣାରେ ପହଞ୍ଚି ଦେଖିଲି ଗତକାଲି ଆସିଥିବା ଉକ୍ତ ମଧ୍ୟ-ବୟସ୍କ ଲୋକ ହାତରେ ଗୋଟିଏ ବାଡ଼ି ଧରି ମହନ୍ତଙ୍କୁ ଛେଚି ଛେଚି ବାଡ଼େଇ-ଥାଏ । ସେଇ ଝିଅଟି ମଧ୍ୟ ମହନ୍ତଙ୍କୁ ଛୁରୀ ଧରି ଭୁଷି ଦେଉଥାଏ । ମହନ୍ତ ଜୀବନ ରକ୍ଷା ପାଇଁ ଅଗଣାରେ ଚିତ୍କାର କରି ପଳେଇବାକୁ ଚେଷ୍ଟା କରୁଥାନ୍ତି । ତାଙ୍କର ସାରା ଦେହରୁ ରକ୍ତ ବାହାରୁଥାଏ । ମୁଁ ଆମ ପଶ୍ଚିମ ପାଖ ଦ୍ୱାର ପାଖରେ ଠିଆହୋଇ "ମହନ୍ତଙ୍କୁ ମାରି ପକାଇଲେ, ମାରି ପକାଇଲେ" ବୋଲି ପାଟି କରୁଥାଏ । ଆମ ପାଟି ଶୁଣି ଅନ୍ୟ ଲୋକମାନେ ଦୌଡ଼ି ଆସିଲେ । ଆମ ଚିତ୍କାର ଶୁଣି ଉକ୍ତ ମଧ୍ୟ-ବୟସ୍କ ଲୋକ ଓ ଯୁବତୀ ଝିଅ ଗେଟ୍ ବାଟେ ଦେଇ ଚାଲିଗଲେ । × × ×

ମହନ୍ତ ରକ୍ତାକ୍ତ ଅବସ୍ଥାରେ ପଶ୍ଚିମ ପାଖ ବାରଣ୍ଡାରେ ଶୋଇ-ଗଲେ । ମୋତେ ପାଣି ମାଗିଲେ । ମୁଁ ପାଣି ଆଣି ମହନ୍ତଙ୍କ ମୁହଁରେ ଦେଲି । କିଛି ସମୟ ପରେ ମହନ୍ତ ମରିଗଲେ ।”

ପୁରୀ ଟାଉନ ଥାନାର ସବ୍-ଇନ୍‌ସ୍‌ପେକ୍ଟର ପି. ସି. ପ୍ରଧାନ ଗୌରିଶଙ୍କରଙ୍କ ରିପୋର୍ଟ ଉପରେ ମର୍ଡ଼ର କେସ୍‌ର ତଦନ୍ତ ଆରମ୍ଭ କଲେ ।

ପରଦିନ ରାମାନୁଜ ଦାସଙ୍କ ମୃତ୍ୟୁ ଖବର ବିଜୁଳିବେଗରେ ପୁରୀ ସହରରେ ପ୍ରଚାର ହେଲାପରେ ଶହଶହ ଦେଖଣାହାରୀ, ଭକ୍ତ, ଯାତ୍ରୀ ଜ୍ୟୋତିମଠ ପରିସର ମଧ୍ୟରେ ରୁଣ୍ଡହେଲେ । ସମସ୍ତଙ୍କ ମୁହଁରେ ଗୋଟିଏ କଥା – ମହନ୍ତ ମହାରାଜଙ୍କୁ ହତ୍ୟା କରାଗଲା କାହିଁକି ? ହତ୍ୟାକାରୀଙ୍କ ଉଦ୍ଦେଶ୍ୟ କଅଣ ? କିଏ ଏହି ହତ୍ୟାକାରୀ ? କେତେ ପ୍ରଶ୍ନ ! ସନ୍ଦେହ । ଉତ୍କଣ୍ଠା ! ରାଗ । ପ୍ରତିହିଂସା । ଶାନ୍ତ, ସରଳ, ସୁନ୍ଦର ଜ୍ୟୋତିମଠର ପରିବେଶ ହଠାତ୍ କୋଳାହଳମୟ ହୋଇଉଠିଲା । ସନ୍ଦେହ, ଭୟର ଛାୟା ଚାରିଆଡ଼େ ଖେଳିଗଲା ।

ତଦନ୍ତକାରୀ ପୁଲିସ ଅଫିସର ଗୌରିଶଙ୍କରଙ୍କଠାରୁ ଜମାନବନ୍ଦୀ ନେଲାପରେ ଅଳ୍ପ ସମୟ ମଧ୍ୟରେ ହତ୍ୟାକାରୀଙ୍କୁ ଠାବ କରି ଧରିବାରେ ସକ୍ଷମ ହୋଇ ପାରିଥିଲେ । ହତ୍ୟାକାରୀ ମଠର ଅଳ୍ପଦୂରରେ ମଟାଣି ଚଣ୍ଡୀ ମନ୍ଦିରରେ ଥିବା ଅବସ୍ଥାରେ ପୁଲିସ ଅଫିସର ସେଠାରେ ପହଞ୍ଚି ସେମାନଙ୍କୁ ରକ୍ତଭିଜା ଲୁଗା, ମାରଣାସ୍ତ୍ର ସହ ଦେଖିବାକୁ ପାଇ ଗିରଫ କରି ଥାନାକୁ ଆଣିଥିଲେ । ସେ ପର୍ଯ୍ୟନ୍ତ ହତ୍ୟାକାରୀ, ରକ୍ତଭିଜା ଛୁରୀକୁ ଖୋଳ ଅଣ୍ଟାରେ ଝୁଲାଇ ରଖିଥାନ୍ତି ।

ତଦନ୍ତକାରୀ ପୁଲିସ ଜାଣିବାକୁ ପାଇଲେ ଯେ,ମଧ୍ୟବୟସ୍କ ଲୋକଙ୍କ ନାମ ହରିଶଙ୍କର ଶର୍ମା । ଉତ୍ତର ପ୍ରଦେଶ ଲକ୍ଷ୍ନୌ ଜିଲ୍ଲାରେ ତାଙ୍କ ଘର । ଆଲ୍ଲାହାବାଦ୍ ଇଉନିଭରସିଟିରୁ ହରିଶଙ୍କର ପଦାର୍ଥ ବିଜ୍ଞାନରେ ଏମ୍.ଏ. ପାଶ୍ କଲାପରେ କାନପୁର ଡ.ଏ.ଭି କଲେଜରେ ଆଇନ୍ ପଢ଼ିଥିଲେ ।

ଉତ୍ତର ପ୍ରଦେଶର ବିଭିନ୍ନ କଲେଜ ଏବଂ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନ-ମାନଙ୍କରେ ସେ ଶିକ୍ଷକତା କରିଥିଲେ । କାନପୁର କଲେଜରେ ଥିବା ସମୟରେ ତାଙ୍କୁ କର୍ତ୍ତବ୍ୟହୀନ ପାଇଁ କଲେଜ ଶିକ୍ଷକତାରୁ ବରଖାସ୍ତ କରାଯାଇ ଥିଲା । ପରେ ପୁଣି ତାଙ୍କୁ ଚାକିରି ଦିଆଯାଇଥିଲା । ମାତ୍ର ୧୯୭୭ ମସିହା ବେଳକୁ ସେ ଅନୁଭବ କଲେ ଯେପରି ଶ୍ରୀ ଶିବଶଙ୍କର ଦୈବୀଶକ୍ତି ତାଙ୍କ ମନରେ ପ୍ରବେଶ କରିଛନ୍ତି । ସେ ସେଇ ବର୍ଷ ଚାକିରିରୁ ଅବ୍ୟାହତି ନେଇ ଧର୍ମ ଯାତ୍ରାରେ ଦେଶ ଭ୍ରମଣ ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ପୂର୍ବରୁ ତାଙ୍କର ଧର୍ମପତ୍ନୀ କ୍ୟାନ୍‌ସର ରୋଗରେ ମୃତ୍ୟୁବରଣ କରିଥିଲେ । ଦେଶ ଭ୍ରମଣ ଉଦ୍ଦେଶ୍ୟରେ ବାହାରିଲା ବେଳେ ତାଙ୍କ ସଙ୍ଗରେ ଥିଲେ ତାଙ୍କର ଏକମାତ୍ର କନ୍ୟା ବିପ୍ଳବୀ କୁମାରୀ ଓରଫ ମଧୁମିତା ଏବଂ ଶିଶୁ ପୁତ୍ର । ଦେଶର ବହୁ ତୀର୍ଥସ୍ଥାନ ଭ୍ରମଣ କଲାପରେ ୨୯-୧-୧୯୭୭ ମସିହାରେ ସେ ଶ୍ରୀକ୍ଷେତ୍ରରେ ପହଞ୍ଚିଥିଲେ । ତୀର୍ଥ ଭ୍ରମଣ ସମୟରେ ସେମାନେ ତ୍ରିଶୂଳ, ଛୁରୀ ଇତ୍ୟାଦି ମଧ୍ୟ ସଂଗ୍ରହ କରି ନିଜ ପାଖରେ ରଖିଥିଲେ ।

ପୁରୀରେ ପହଞ୍ଚିଲା ପରେ, ସେମାନେ ବିଭିନ୍ନ ସ୍ଥାନରେ ରହି ଶେଷରେ ସ୍ୱର୍ଗଦ୍ୱାର ପାଖ ଶ୍ମଶାନ ଚଣ୍ଡୀ ମନ୍ଦିର ପାଖେ ରହୁଥିଲେ । ହରିଶଙ୍କରଙ୍କୁ ପାଖ ଲୋକ ଭକ୍ତମାନେ "ପଣ୍ଡିତଜୀ" ବୋଲି ଡାକୁଥିଲେ ଏବଂ ତାଙ୍କ ସଙ୍ଗେ ରାମାୟଣ, ମହାଭାରତ ଚର୍ଚ୍ଚା କରୁଥିଲେ । ହରି-ଶଙ୍କର ଜୀ ପ୍ରାଞ୍ଜଳ ଭାବରେ ସମସ୍ତଙ୍କୁ ରାମାୟଣ ପ୍ରବଚନ ଶୁଣାଉଥିଲେ । ଶ୍ମଶାନ ଚଣ୍ଡୀ ମନ୍ଦିର ପାଖେ ରହିଲା ପରେ, ମାର୍ଚ୍ଚ ମାସ ୮ ତାରିଖ ଦିନ ହରିଶଙ୍କର ଝିଅ ମଧୁମିତା ଜ୍ୟୋତିମଠ ମହନ୍ତ ମହାରାଜଙ୍କ ଦର୍ଶନ ପାଇଁ ଆସି ତାଙ୍କ ସହିତ ଧର୍ମଚର୍ଚ୍ଚା କରିବାପାଇଁ ଅନୁରୋଧ କରିଥିଲେ । ସେଇ ଅନୁରୋଧ କରିବା ସମୟରେ ସେମାନେ ମଧ୍ୟ ମହନ୍ତ ମହାରାଜାଙ୍କୁ କହିଥିଲେ ଯେ ପୃଥିବୀରେ ଯେତେ କୁପ୍ରକୃତିର ଖରାପ ଲୋକ ଅଛନ୍ତି ସେମାନଙ୍କୁ ଧରାପୃଷ୍ଠରୁ ବିଦାୟ ଦେବା ଉଚିତ । ମହନ୍ତ ପକ୍ଷରେ ତାଙ୍କର ଏପରି ବାତୁଳତା କଥାରେ କର୍ଣ୍ଣପାତ କରିନଥିଲେ ବା ଧର୍ମଚର୍ଚ୍ଚା କରିବା ପାଇଁ ଆଗ୍ରହ ପ୍ରକାଶ କରିନଥିଲେ ।

ହତ୍ୟାକାରୀ ସେଦିନ ଫେରିଯାଇଥିଲେ ମଧ୍ୟ ତା’ ପରଦିନ ପୁଣି ପରାଶରଙ୍କୁ ଦେଖାକରି ଧର୍ମଚର୍ଚ୍ଚା ତାଙ୍କ ସଙ୍ଗରେ କରିବା ପାଇଁ ଆହ୍ୱାନ ଦେଇଥିଲେ । ସେମାନଙ୍କ ହାବ୍‌ଭାବକୁ ଲକ୍ଷ୍ୟକରି ମହନ୍ତ ତାଙ୍କ ସହିତ କୌଣସି ଧର୍ମଚର୍ଚ୍ଚା କରିବେ ନାହିଁ ବୋଲି ମନା କରିଦେଇଥିଲେ । ଏପରି ଭାବେ ମନା କରିଦେବା ହରିଶଙ୍କର ଆଉ ମଧୁମିତା ମନରେ ଦାରୁଣ ଆଘାତ ଦେଇଥିଲା । ସେମାନେ ସେଦିନ ଫେରିଗଲେ, ହେଲେ ମନରେ ବୋହି ନେଇ ଯାଇଥିଲେ ମହନ୍ତଙ୍କ ପାଇଁ ଅନେକ ଘୃଣା, ପ୍ରତିଶୋଧ ନେବା ପାଇଁ ଈପ୍‌ସିତ ଆକାଂକ୍ଷା ।

ମାର୍ଚ୍ଚ ମାସ କୋଡ଼ିଏ ତାରିଖ ସକାଳ ନ’ ଘଣ୍ଟା ସମୟରେ ପୁଣି ହତ୍ୟାକାରୀ ଦୁଇଜଣ ମଠ ଭିତରକୁ ପ୍ରବେଶ କଲେ । ସେତେବେଳେ ପରାଶର ରାମାନୁଜ ରଘୁନାଥଜୀଉଙ୍କ ପାଇଁ ପୁଷ୍ପମାଳା ଗୁନ୍ଥିବାରେ ବ୍ୟସ୍ତ ଥାନ୍ତି । ଅନ୍ୟ ଅନ୍ତେବାସୀ ଠାକୁରଙ୍କ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ଥିଲେ । ସେଇ ସମୟକୁ ଉପଯୁକ୍ତ ସମୟ ଭାବି, ବାପ ଝିଅ ଦୁହେଁ ସାଙ୍ଗରେ ନେଇଥିବା ଛୁରୀ ଆଉ ହିଁଶୁଲର ବେଣ୍ଟ ଦେହରେ ମହନ୍ତଙ୍କୁ ଆକ୍ରମଣ କଲେ । ସେମାନଙ୍କ ଅତର୍କିତ ଆକ୍ରମଣର ସମ୍ମୁଖୀନ ହୋଇ ନପାରି, ପରାଶର ପ୍ରାଣ ବିକଳରେ ମନ୍ଦିର ବେଢ଼ା ଗୃହପଟେ ଦଉଡ଼ିବାକୁ ଲାଗିଲେ, ମାତ୍ର ହତ୍ୟାକାରୀ ଦୁଇଜଣ ତାଙ୍କୁ ଗୋଡ଼େଇ ଗୋଡ଼େଇ ଆଘାତ ଦେବାରେ ଲାଗିଥାନ୍ତି । ସେତେବେଳେ ମହନ୍ତଙ୍କୁ ସାହାଯ୍ୟ କରିବା ପାଇଁ ନିକଟରେ କେହି ନଥିଲେ । ରକ୍ତାକ୍ତ ଅବସ୍ଥାରେ ପରାଶର ପଡ଼ିଗଲା ପରେ, ହତ୍ୟାକାରୀ ଦୁଇଜଣ ରକ୍ତଭିଜା ପରିଚ୍ଛଦ ଏବଂ ରକ୍ତସିକ୍ତ ହସ୍ତରେ ଫେରୁଥିବା ସମୟରେ "ଜୟଶଙ୍କର" ଧ୍ୱନିକରି ଫେରୁଥିବାର ଲୋକେ ଦେଖିଥିଲେ ।

ମୃତ୍ୟୁ ଘଟଣାର ତଦନ୍ତ ପରେ, ପୁଲିସ ଏହାକୁ ଏକ ହତ୍ୟା ଘଟଣା କହି ହରିଶଙ୍କର ଆଉ ମଧୁମିତାଙ୍କ ନାମରେ କେସ୍ ରୁଜୁ କଲେ । ପୁରୀ ଜିଲ୍ଲା ଜଜ୍‌କୋର୍ଟରେ ଏହାର ବିଚାର ଚାଲିଲା । ବିଚାର ବେଳେ ଅଦାଲତ ଲୋକାରଣ୍ୟ ହୋଇ ଉଠୁଥିଲା । ପୁଲିସ ଆଗରେ

ହତ୍ୟାକାରୀ ସମସ୍ତ କଥା ମାନିଥିଲେ ମଧ୍ଯ ବିଗୃରବେଳେ ସେମାନେ ପରାଶର ରାମାନୁଜ ଦାସଙ୍କ ହତ୍ୟାକାଣ୍ଡରେ କୌଣସିଭାବେ ସମ୍ପୃକ୍ତ ନୁହନ୍ତି ବୋଲି କହିଥିଲେ । ପୁଲିସ ତାଙ୍କର ରକ୍ତଭିଜା ପୋଷାକ ପରିଚ୍ଛଦକୁ ଜବତ କରିବା ବିଷୟରେ ସେ କହିଥିଲେ ଯେ ତାଙ୍କର ଜ୍ୟେଷ୍ଠ ପୁଅକୁ ଝିଅ ମଧୁମିତା ଗୋଟିଏ ସେଓ କାଟିକରି ଦେବା ସମୟରେ ତାଙ୍କ ହାତ କଟିଯିବାରୁ ହାତରୁ ରକ୍ତସ୍ରାବ ହୋଇଥିଲା ଏବଂ ସେଇ ରକ୍ତ ତାଙ୍କ ପୋଷାକରେ ଲାଗିଥିଲା । ତା’ଛଡ଼ା ଯେଉଁ ସାକ୍ଷୀମାନେ ସେମାନଙ୍କୁ ହତ୍ୟାକାରୀ ବୋଲି କହୁଛନ୍ତି, ସେମାନେ ତାଙ୍କ ପ୍ରତି ଖରାପ ଉଦ୍ଦେଶ୍ୟ ରଖି ଏକଥା କହୁଛନ୍ତି । ସେମାନେ ଭଦ୍ର, ଶିକ୍ଷିତ ଓ ବିଦେଶୀ ବା ଅନ୍ୟ ରାଜ୍ୟର ହୋଇଥିବା ହେତୁ ତାଙ୍କ ନାମରେ ସାକ୍ଷୀମାନେ ମିଥ୍ୟା ଦୋଷାରୋପ କରି ହତ୍ୟାକାଣ୍ଡରେ ସମ୍ପୃକ୍ତ କରାଇ ଦେଇଛନ୍ତି । ବାଦୀ ପ୍ରତିବାଦୀ ଓକିଲ ନିଜ ନିଜ ଯୁକ୍ତିକୁ ପ୍ରତିପାଦନ କରିବାକୁ ଯାଇ ବିଭିନ୍ନ ପ୍ରମାଣ ଅଦାଲତ ଆଗରେ ଉପସ୍ଥାପିତ କରିଥିଲେ ।

ଶେଷରେ ବିଗୃରପତି ସମସ୍ତ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରିସାରିଲା ପରେ, ଆସାମୀ ଦୁଇଜଣଙ୍କୁ ପ୍ରକୃତରେ ପରାଶର ରାମାନୁଜଙ୍କ ହତ୍ୟାକାରୀ ବୋଲି ସାବ୍ୟସ୍ତ କରି ଦୁଇଜଣଙ୍କୁ ଆଜୀବନ କାରାଦଣ୍ଡାଦେଶ ଦେଇଥିଲେ ।



## ନିଖୋଜ 

ନିଖୋଜ । ଉଞ୍ଜନଗର, ସୋରଡ଼ା ଅଞ୍ଚଳର ପ୍ରସିଦ୍ଧ ଲୁହା ବ୍ୟବସାୟୀ ଶ୍ରୀ ଏନ୍. କେ. ଚଉଧୁରୀଙ୍କ ନିଖୋଜ ସମ୍ବାଦ ଓଡ଼ିଶାର ପ୍ରତ୍ୟେକ ଖବର କାଗଜରେ ପ୍ରକାଶ ପାଇବା ପରେ, ଚଉଧୁରୀଙ୍କ ବଡ-କୋଦଣ୍ଡ ଗାଁ ଏବଂ ପାଖ ଅଞ୍ଚଳରେ ଏକ ସନ୍ଦେହ ଆଉ ଆଶଙ୍କାର କୁହେଳିକା ସୃଷ୍ଟି ହୋଇଥାଏ । ମିଃ ଚଉଧୁରୀ, ତାଙ୍କ ପୁତୁରା ଆର୍. କେ. ପୃଷ୍ଟିଙ୍କ ସଙ୍ଗେ ରାଉରକେଲା, ରାଜଗାଙ୍ଗପୁର ଜୁଲାଇ ମାସ ୧୦ ତାରିଖରେ (୧୯୮୨ ମସିହା) ଲୁହାଛଡ଼, ଆଇରନ୍ ୱେଷ୍ଟସ୍ ସିଟ୍ କିଣିବାକୁ ଯାଇଥିଲେ । ସାଖରେ ଥିଲା ଯଥେଷ୍ଟ ଟଙ୍କା । ରାଉରକେଲା, ରାଜଗାଙ୍ଗପୁର ସହର ବୁଲିବାପରେ ମେସର୍ସ ବଜରଙ୍ଗ କମର୍ସିଆଲ୍ ଆଣ୍ଡ କମ୍ପାନୀ ପାଖରୁ ଲୁହା-ଛଡ଼ କିଣିବାକୁ ସ୍ଥିରକରି ମିଃ ପୃଷ୍ଟି ଉଞ୍ଜନଗର ଫେରି ଆସିଥିଲେ । ଏନ୍. କେ. ଚଉଧୁରୀ ମାଲ ଧରି ଟ୍ରକ ସଙ୍ଗେ ଆସିବା କଥା ସ୍ଥିର ହୋଇଥିଲା । ଜୁଲାଇମାସ ୧୦ ତାରିଖରୁ ୨୦ ତାରିଖ ପର୍ଯ୍ୟନ୍ତ ଚଉଧୁରୀ ଉଞ୍ଜନଗର ନ ଫେରିବାରୁ ପୃଷ୍ଟି ପୁଣି ଥରେ ତାଙ୍କ ସନ୍ଧାନରେ ରାଉରକେଲା ଗଲେ । ରାଉରକେଲା ଏବଂ ରାଜଗାଙ୍ଗପୁର ଠାରେ ଖୋଜଖବର ନେଲା ପରେ, ସେ ଜାଣିବାକୁ ପାଇଥିଲେ ଯେ, ୧୪।୭।୮୨ ସକାଳୁ ଶ୍ରୀ ଚଉଧୁରୀ ଓ. ଆର୍. କେ. ଟ୍ରକ ନମ୍ବର ୩୫୭୭ ରେ, ସାଢ଼େ ଏଗାର ଟନ ମାଲ ଧରି ରାଜଗାଙ୍ଗପୁରଠାରୁ ଉଞ୍ଜନଗର ଉଦ୍ଦେଶ୍ୟରେ ବାହାରି ଥିଲେ । ୧୪।୭ରୁ ଟ୍ରକ, ମାଲ ବୋଝେଇ କରି ବାହାରି ଯାଇଥିଲେ ମଧ୍ୟ ସେ ପର୍ଯ୍ୟନ୍ତ ଟ୍ରକ୍, ମାଲ ଆଉ ମାଲିକଙ୍କର ପତ୍ତା ମିଳିନଥିଲା । ଟ୍ରକ୍‌ର ଡ୍ରାଇଭର ପି. ସି. ମୁଦୁଲି ମଧ୍ୟ ନା-ପତ୍ତା ହୋଇ ଯାଇଥିଲେ । ଉଞ୍ଜ-ନଗରକୁ ଫେରିଲାପରେ ମିଃ ପୃଷ୍ଟି ଉଞ୍ଜନଗର ଥାନାରେ ଟ୍ରକ୍

ଡ୍ରାଇଭର ମୁଦୁଲିଙ୍କ ନାଁରେ ପ୍ରାଥମିକ ରିପୋର୍ଟ ଦେଇ କେସ୍ ରୁଜୁ କଲେ ।

ଏଥିମଧ୍ୟରେ ଆଜ ଏକ ଚାଞ୍ଚଲ୍ୟକର ଖବର ପ୍ରକାଶ ପାଇଲା । ଶାଳବଣ ଘେରା ନିଘଞ୍ଚ ଜଙ୍ଗଲ ରାସ୍ତାରେ ଗୋଟିଏ ଅଚିହ୍ନା ଶବ । ସମ୍ବଲପୁର କଟକ ରାସ୍ତାରୁ ଯେଉଁ ଷ୍ଟ୍ରେଟ ପଞ୍ଚାୟତ ରାସ୍ତା ବାମୁର ଛକର ଅଳ୍ପଦୂରରେ କୋଟସିଙ୍ଗା ଗାଁକୁ ଲମ୍ବି ଯାଇଥାଏ ସେଇରାସ୍ତା । ରାସ୍ତାଟି କଚ୍ଚା । ଦୁଇପଟେ ଶାଳବଣ । ନିଘଞ୍ଚ ଜଙ୍ଗଲ । ରାସ୍ତା କଡ଼ରେ ଷ୍ଟ୍ରେଟ ପୋଖରୀଟିଏ । ପୋଖରୀ ନିକଟ ବୁଦାମୂଳେ ଗୋଟେ ଅଚିହ୍ନା ଲୋକର ଶବ । ଠିକଏ ପାଖରେ ଗୋଟେ ଚପଲ । ଖଣ୍ଡେ ରଙ୍ଗବେରଙ୍ଗିଆ ରୁମାଲ । ଖବର ପାଇ ଢେଙ୍କାନାଳ ଜିଲ୍ଲା କିଶୋର ନଗର ଥାନାର ଏ. ଏସ୍. ଆଇ. ସଦଳବଳେ ଅଚିହ୍ନା ଶବ ପଡ଼ିଥିବା ସ୍ଥାନରେ ପହଞ୍ଚିଥିଲେ, ଜୁଲାଇ ମାସ ଷୋଳ ତାରିଖ ଦିନ । ଏ. ଏସ୍. ଆଇ. ଶବ ପାଖେ ପହଞ୍ଚି ଶବକୁ ପରୀକ୍ଷା ନିରୀକ୍ଷା କରିନେଲେ । ଶବକୁ ପରୀକ୍ଷା କଲା ସମୟରେ ସେ ଦେଖିବାକୁ ପାଇଲେ ଶବ ଦେହରେ ବହୁ କ୍ଷତ ଦାଗ । ମାଡ଼ରେ ମୁଣ୍ଡ ଫାଟିଯାଇ ଥାଏ । ବୁଦା ପାଖରେ ମେଞ୍ଚା ମେଞ୍ଚା ରକ୍ତ ଦାଗ । ଷ୍ଟ୍ରେଟ ରାସ୍ତା ଉପରେ ଗାଡ଼ି ଚକାର ଦାଗ । ପାଖରେ ଗାଡ଼ି ବୁଲିବାର ଚିହ୍ନ । ମୃତବ୍ୟକ୍ତିର ଚପଲ, ରୁମାଲ, କେତେକ ଛିଣ୍ଡା କାଗଜ ପାଖରେ ପଡ଼ିଥାଏ ।

ଏ. ଏସ୍. ଆଇ. ସ୍ୱାଇଁଙ୍କ ମନରେ ସନ୍ଦେହ । ଏହା ଏକ ଅସ୍ୱାଭାବିକ ମୃତ୍ୟୁ ଘଟଣା ନୁହେଁ, ଏହା ଯେ ଏକ ନିର୍ମମ "ହତ୍ୟା କାଣ୍ଡ" ! କିଶୋର ନଗର ଥାନାରେ ତାଙ୍କ ରିପୋର୍ଟ ଉପରେ ଏକ ହତ୍ୟାକାଣ୍ଡ ମକଦ୍ଦମା ରୁଜୁ କରାଗଲା । ମାତ୍ର ଏ ହତ୍ୟାକାରୀ କିଏ ? ଅଚିହ୍ନା ଶବ କାହାର ? ପୁଣି ସମ୍ବାଦପତ୍ରରେ ପ୍ରକାଶ ପାଇଲା ସମ୍ବଲପୁର-କଟକ ରାସ୍ତା କଡ଼ରେ ଅଚିହ୍ନା ଲୋକର ଶବ । ମୃତ୍ୟୁ ବ୍ୟକ୍ତିଙ୍କ ପାଖରୁ ମିଳିଥିବା କାଗଜ ଏବଂ ଜିନିଷପତ୍ର ନେଇ ପୁଲିସ ତଦନ୍ତ ଆରମ୍ଭ କଲା । ତଦନ୍ତ ବେଳେ କିଶୋରନଗର ପୁଲିସ ଜାଣିବାକୁ ପାଇଲେ ଯେ, ତାଙ୍କ

ଇଲାକାରେ ମିଳିଥିବା ଅଚିହ୍ନା ଶବ ଭଞ୍ଜନଗର ଥାନାରେ ରିପୋର୍ଟ ହୋଇଥିବା ନିଖୋଜ ଶ୍ରୀ ଏନ୍. କେ. ଚଉଧୁରୀଙ୍କ ଶବ । ଭଞ୍ଜନଗରରୁ ଲୋକ ଆସି ନିଖୋଜ ଚଉଧୁରୀଙ୍କ ଜିନିଷପତ୍ର ଚିହ୍ନଟ କଲେ ।

ହତ୍ୟା ଘଟଣାଟି ଜଟିଳ ଏବଂ ଆନ୍ତଃ ଜିଲ୍ଲାକୁ କେନ୍ଦ୍ର କରି ଘଟିଥିବା ହେତୁ ଏହାର ତଦନ୍ତ ଭାର ରାଜ୍ୟ ଅପରାଧ ତଦନ୍ତ ବିଭାଗ ନେଇଥିଲେ । ସି: ଆଇ: ଡି: ଇନ୍‌ସପେକ୍ଟର ଜି: ବି: ମହାନ୍ତି ଏହାର ତଦନ୍ତକାରୀ ଅଫିସର ଭାବେ ଦାୟିତ୍ୱ ଗ୍ରହଣ କଲେ । ମିଃ ମହାନ୍ତି ଜଣେ ଦକ୍ଷ ତଦନ୍ତକାରୀ ଅଫିସର ଭାବେ ସୁପରିଚିତ । ପୂର୍ବରୁ ବହୁ ଜଟିଳ ମାମଲା ତଦନ୍ତ କରି, ଅପରାଧୀକୁ ଲୋକଲୋଚନକୁ ଆଣିପାରିଥିଲେ ।

ଏହି ହତ୍ୟାକାଣ୍ଡର ତଦନ୍ତ ଭାର ଗ୍ରହଣ କଲା ପରେ, ମିଃ ମହାନ୍ତି କିଛିଦିନ ପାଇଁ ହତ୍ୟାକାରୀ କିମ୍ବା ଟ୍ରକ ଡ୍ରାଇଭରଙ୍କ ବିଷୟରେ କିଛି ଖବର ପାଇ ପାରି ନଥିଲେ । ଦିନେ ଜଣେ ଗୁପ୍ତଚର ଠାରୁ ଖବର ମିଳିଲା ଯେ, କଟକ ମାଲଗୋଦାମର କେତେକ ଲୁହା ଲକ୍‌କଡ଼ ବ୍ୟବସାୟୀ ହତ୍ୟାକାଣ୍ଡର ଅଳ୍ପଦିନ ପରେ ଗୋଟିଏ ଟ୍ରକ ଲୁହାଛଡ଼ ଇତ୍ୟାଦି କିଣିଛନ୍ତି । ଏହି ଖବର ପାଇଲା ପରେ ରାଜ୍ୟ ଅପରାଧ ତଦନ୍ତ ବିଭାଗ କଟକ ମାଲଗୋଦାମର ମିସରସ୍ ଷ୍ଟିଲ କୋ: ପ୍ରଭୃତି କେତେକ ଲୁହା ଗୋଦାମରେ ଖାନତଲାସ କରି ଲୁହାଛଡ଼ ଇତ୍ୟାଦି ଜବତ କରିଥିଲେ । ଏହି ଲୁହାଛଡ ଜବତ କଲାପରେ ଏ ବିଷୟରେ ଜାଣିଥିବା କେତେକ ସାକ୍ଷୀଙ୍କୁ ପଚରାଉଚରା କରାଗଲା । ସାକ୍ଷୀମାନେ କହିଥିଲେ ଯେ ରବୀନ୍ଦ୍ର ସ୍ୱାଇଁ ବୋଲି ଜଣେ ବ୍ୟକ୍ତି, ଯେ କି ଟ୍ରକରେ କାମକରେ, ଏ ସମସ୍ତ ଲୁହା ଜିନିଷ ଆଣି ଜୁଲାଇ ମାସ ୧୨ ତାରିଖରେ ବିକ୍ରି କରିଥିଲେ । ଲୁହାଛଡ଼ ଜବତର ଖବର ପାଇ ତଦନ୍ତକାରୀ ଅଫିସର ରବି ସ୍ୱାଇଁ ଏବଂ କୃଷ୍ଣଚନ୍ଦ୍ର ମୁଦୁଲିଙ୍କୁ ଠାବ କରି କଟକ ମାଲଗୋଦାମ ଠାରେ ଲୁହାଛଡ଼ ବିକ୍ରି କରିଥିବା କଥା ଘଟଣା ବିଷୟରେ ତଦନ୍ତ ଆରମ୍ଭ କଲେ । ସେମାନଙ୍କ ଘର ମଧ୍ୟ ତଲାସି ନିଆଗଲା । ଏହି ତଦନ୍ତ

ସମୟରେ ରବି ଏବଂ ମୁଦୁଲି ହତ୍ୟାକାଣ୍ଡର ସମସ୍ତ ବିବରଣୀ ପ୍ରକାଶ କରି କହିଥିଲେ —

ପୁରୀ ଜିଲ୍ଲା କାକଟପୁର ଥାନା କୁଷ୍ଠି ଗାଁର ବିଷ୍ଣୁ ଚରଣ ମୁଦୁଲି ସୈନ୍ୟ ବିଭାଗରେ ଡ୍ରାଇଭର କାମ କରୁଥିଲେ । ୧୯୮୧ ମସିହାରେ ସେ ୧୪ ଦିନ ପାଇଁ ଛୁଟିରେ ଆସି ଆଉ ସୈନ୍ୟ ବିଭାଗକୁ ଫେରି ନ ଥିଲେ । ଜଣେ ପଳାତକ ସୈନ୍ୟ ହିସାବରେ ତାଙ୍କ ନାଁରେ ଗିରଫଦାରୀ ପରଓ୍ୟାନ ବାହାରିଥିଲା । ଡ୍ରାଇଭିଂ ଜାଣିଥିବା ହେତୁ ବିଷ୍ଣୁ କାକଟପୁର ଅଞ୍ଚଳରେ ଚାଲୁଥିବା ଟ୍ରକମାନଙ୍କରେ ସାମୟିକ ଡ୍ରାଇଭର କାର୍ଯ୍ୟ କରେ । ରବି ସ୍ୱାଇଁ ତାଙ୍କ ଗାଁ ଲୋକ । ଟ୍ରକରେ କିଛିଦିନ କାମ କଲା-ପରେ ବିଷ୍ଣୁ ଆଉ ରବି ଟ୍ରକ୍ ବ୍ୟବସାୟ କରିବେ ବୋଲି ତାଙ୍କ ଗାଁର ଜଗବନ୍ଧୁ ବିଶ୍ୱାଳଙ୍କ ସହିତ କଥାବାର୍ତ୍ତା କଲେ । ଜଗବନ୍ଧୁଙ୍କର ଟ୍ରକ ଓ:ଏସ୍:ପୁ: ୫୪୨ ସେତେବେଳେ ଭଡ଼ା ବୁହା କାମ କରୁଥିଲା । ବିଷ୍ଣୁ ରବି ତାଙ୍କ ଟ୍ରକକୁ ମାସକୁ ୯,୫୦୦ ଟଙ୍କାରେ ଭଡ଼ାରେ ଆଣିଲେ । ଜୁଲାଇ ମାସ ପହିଲାରୁ ଭଡ଼ାରେ ଟ୍ରକ୍ ଆଣିଲା ପରେ, ଦୁଇଜଣଯାକ କଟକ ଶିଖରପୁର ପାଖେ ଘର ଭଡ଼ା ନେଇ ରହୁଥିଲେ ।

ଶିଖରପୁରଠାରେ ରହୁଥିବା ସମୟରେ ବିଷ୍ଣୁ କଟକ ଆର୍.ଟି.ଓ ଅଫିସରୁ ଗୋଟିଏ ଜାଲ୍ ରେଜିଷ୍ଟ୍ରେସନ ବହି ଯୋଗାଡ଼ କରିଥିଲା ଏବଂ ଏହି ଜାଲ୍ ଆର୍.ସି. ବୁକ୍ ଟ୍ରକ୍ ନମ୍ବର ଓ.ଆର୍.କେ. "୩୫୭୭" ନାମରେ ଥିଲା । ଜାଲ୍ ଆର୍.ସି. ବହି ପାଇଲା ପରେ ସେମାନେ ଚିନ୍ତା କଲେ ଯେ, କୌଣସି ଗୋଟିଏ ବଡ଼ ଧରଣର ମାଲ ଉଠାଇ ତାକୁ ରାସ୍ତାରେ ବିକି କରି କିଛି ପଇସା ଉଠେଇବେ । ଏଇ ଚିନ୍ତାରେ ଥିଲା-ବେଳେ ୧୨-୭-୮୨ ତାରିଖରେ ସେମାନେ କଟକରୁ ଚୁନ୍ନାପ୍ଲେକଡ଼ ଲୋଡ଼ ନେଇ ଜୋଡ଼ାକୁ ଯାଉଥିଲେ । ଗଲାବେଳେ ସେମାନେ ଟ୍ରକର କ୍ଲିନର ଉତ୍ତମକୁ ସାଙ୍ଗରେ ନେଇନଥିଲେ । ଉତ୍ତମ ଟ୍ରକ ମାଲିକ ତରଫରୁ ଟ୍ରକ ଦେଖିଭାଳ କରିବାକୁ ନିଯୁକ୍ତ ହୋଇଥିଲା । ସେମାନେ ଉତ୍ତମକୁ ସାଙ୍ଗରେ ନନେଇ, ବାଟରେ ଗଲାବେଳେ ଟ୍ରକର ନମ୍ବରପ୍ଲେଟ୍ ବଦଳାଇ ଜାଲ

ନମ୍ବର ଥାଇ ଓ:ଆର୍:କେ: "୩୫୬୭" ଲଗାଇ ଦେଲେ ଏବଂ ଏଇ ନମ୍ବର ଥାଇ ସେମାନେ ଜୋଡ଼ା ପେଟ୍ରୋଲ ପମ୍ପରୁ ଡିଜେଲ ନେଇ ରାଜଗାଙ୍ଗପୁର ୧୩-୭-୮୨ରେ ଯାଇଥିଲେ ।

ରାଜଗାଙ୍ଗପୁରଠାରେ ପହଞ୍ଚି ସେମାନେ ଭଡ଼ା ଖୋଜୁଥିଲେ । ସେତେବେଳକୁ ମି: ଏନ୍. କେ. ଚଉଧୁରୀ ପ୍ରାୟ ୫୦,୦୦୦ ଟଙ୍କାର ଲୁହା ଆଜ୍‌ବେଷ୍ଟସ୍ ଚଦର କିଣି ଭଞ୍ଜନଗର ଯିବାପାଇଁ ଗାଡ଼ି ଖୋଜୁଥାନ୍ତି । ବିଷ୍ଣୁ ମୁଦୁଲିର ଚଉଧୁରୀଙ୍କ ସଙ୍ଗେ ଦେଖାହେଲା । ଟନପ୍ରତି ୧୫୦ ଟଙ୍କା ଦରରେ ଭଡ଼ା ନେଇ ମାଲ୍ ଭଞ୍ଜନଗରରେ ପହଞ୍ଚାଇ ଦେବ ବୋଲି ବିଷ୍ଣୁ ଜବାବ୍ ଦେଲା । ଜବାବ୍ ଛିଣ୍ଡିଲା ପରେ ସେଇଦିନ ସନ୍ଧ୍ୟା ୫ଟା ବେଳେ ବିଷ୍ଣୁ, ରବି ଏବଂ ଚଉଧୁରୀ ଟ୍ରକ୍‌ରେ ବସି ଭଞ୍ଜନଗର ବାହାରିଲେ । ସେମାନେ ସମ୍ବଲପୁର ପାଖ ଶାଶନଗାଁର ପାଖେ ପହଞ୍ଚିଲା ପରେ ଟ୍ରକର ଆଗ ଚକା ଫାଟିଗଲା । ଟ୍ରକ୍ ଚକା ଫାଟିଗଲା ପରେ ସେମାନେ ଷ୍ଟେପିନ୍ ଲଗାଇ ସେଦିନ ପାଇଁ ରାତିରେ ସେଇଠି ରହିଗଲେ । ତା ପରଦିନ ସକାଳୁ ବାହାରି ପ୍ରାୟ ଦିନ ୧୧ଟା ସୁଦ୍ଧା ସେମାନେ ସମ୍ବଲପୁରର ମାନେଶ୍ୱର ପାଖେ ପହଞ୍ଚି ସେଇଠି ଚକା ଚିପାୟର କରିବାକୁ ପୁରୋହିତ ବାବୁଙ୍କ ଫିଷ୍ଟ ଟାୟାର ଓ୍ୱାର୍କସ ନିକଟରେ ଗାଡ଼ି ରଖିଲେ । ମାନେଶ୍ୱରରେ ରହିଲା ବେଳେ ବିଷ୍ଣୁ, ରବି ବିଗୃର କଲେ ଯେ, ଚଉଧୁରୀଙ୍କୁ ହତ୍ୟା କରି ଜିନିଷପତ୍ର ଅନ୍ୟ ଜାଗାରେ ବିକ୍ରୟ କରି ଟଙ୍କା ଧରି ପଳାଇବେ । ହତ୍ୟା କରିବା ପାଇଁ ସେମାନେ ଆଉ ଜଣଙ୍କର ସାହାଯ୍ୟ ଖୋଜିଲେ । ମାନେଶ୍ୱର ପାଖେ ପ୍ରମୋଦ ବାରିକ ବୋଲି ଜଣେ ବ୍ୟକ୍ତି ଆଗରୁ ବିଷ୍ଣୁ ସଙ୍ଗେ ହେଲେପର୍ କାମ କରୁଥିଲା । ପ୍ରମୋଦ ବାରିକ ଘର ଫୁଲ୍‌ବାଣୀ ଅଞ୍ଚଳରେ, ମାତ୍ର ସେ ମାନେଶ୍ୱରରେ ଲୁଧୁବାଡ଼ି ଘରେ ରହୁଥାଏ । ଲୁଧୁର ଝିଅ ସାବିତ୍ରୀ ସଙ୍ଗେ ତାର ବିବାହ ପ୍ରସ୍ତାବ ପଡ଼ିଥାଏ ।

ବିଷ୍ଣୁ ସନ୍ଧ୍ୟାବେଳକୁ ପ୍ରମୋଦ ପାଖେ ପହଞ୍ଚିଲା ଏବଂ ତାଙ୍କର ଚଉଧୁରୀଙ୍କୁ ହତ୍ୟା କରିବା ପାଇଁ ସମସ୍ତ ଯୋଜନା କହିଲା । ପ୍ରମୋଦ

ତାଙ୍କ କଥାରେ ରାଜି ହେଲା ପରେ ସେ ଆଉ ଦୁଇଜଣଙ୍କୁ ଏଥିରେ ସାଙ୍ଗ କରିବା ପାଇଁ ପ୍ରସ୍ତାବ ଦେଇ ପଞ୍ଚାନନ ଗୁଣ୍ଡ୍ରୁକ ଆଉ ଶାନ୍ତନୁ ମୁଣ୍ଡ୍ରୁକ ପାଖକୁ ଗଲା । ସେମାନଙ୍କୁ ସାଙ୍ଗରେ ଧରି ଆସିଲେ, ମାତ୍ର ବାଟରେ ଯେତେବେଳେ ପ୍ରମୋଦ, ଚଉଧୁରୀଙ୍କୁ ହତ୍ୟା କରିବା କଥା କହିଲା ଏବଂ ଏଥିରେ ତାଙ୍କୁ ସାହାଯ୍ୟ କଲେ ଜଣକୁ ୧୦୦୦ ଟଙ୍କା ଦିଆଯିବ ବୋଲି ଲୋଭ ଦେଲା; ଗୁଣ୍ଡ୍ରୁକ ଆଉ ମୁଣ୍ଡ୍ରୁକ ଦୁହେଁ ତା କଥାରେ ରାଜି ନହୋଇ ବାଟରୁ ଫେରିଆସିଲେ । ସେମାନେ ଫେରିଗଲା ପରେ ମଧ୍ୟ ପ୍ରମୋଦ ହତୋତ୍ସାହ ନହୋଇ, ରେଢ଼ାଖୋଲ ପାଖେ ଚେଷ୍ଟା କରିବ ବୋଲି କହି ଟ୍ରକରେ ବସି ରେଢାଖୋଲ ଅଞ୍ଚଳେ ଗଲେ ।

ହତ୍ୟାକାରୀମାନଙ୍କ ଯୋଜନା ଚଉଧୁରୀବାବୁଙ୍କୁ ଜଣା ନଥାଏ । ସେ ଟ୍ରକ୍ ଆଗରେ ବସି କପରି ଭଞ୍ଜନଗରରେ ପହଞ୍ଚିବେ, ସେଥିଲାଗି ଚିନ୍ତା କରୁଥାନ୍ତି । ଘରୁ ଏତେଦିନ ହେଲା ବାହାରିଲେଣି । ତା' ଛଡ଼ା ବ୍ୟବସାୟ ବନ୍ଦ । ଯେତେ ଶୀଘ୍ର ପହଞ୍ଚିଲେ ସୁବିଧା । ସେ ଚିନ୍ତା ରାଜ୍ୟରେ ଥିଲାବେଳେ ପ୍ରାୟ ୧୧ଟା ବେଳକୁ ଟ୍ରକ ଯାଇ ରେଢ଼ାଖୋଲ ଶର୍ମା ହୋଟେଲ ସାମ୍ନାରେ ଠିଆ ହେଲା । ରେଢ଼ାଖୋଲ ଟ୍ରକ୍, ବସ୍ ଆଉ ବସଯାତ୍ରୀଙ୍କ ପାଇଁ ବିଶ୍ରାମ ନେବା ସ୍ଥାନ । ଏଠାରେ ଭୋଜନ କରିବା ପାଇଁ ସୁନ୍ଦର ପଞ୍ଜାବୀ ଢାବା ଅଛି । ଜଳଖିଆ ଖାଇବା ପାଇଁ ଦୋକାନ ଅଛି । ପାନ, ବିଡ଼ି, ସିଗାରେଟ୍ ପାଇଁ ଗୋଟାକ ପରେ ଗୋଟେ ଦୋକାନ ରାସ୍ତା ଦାଢ଼ରେ ରହିଥାଇ ଖୋଲିଥାଏ ।

ଶର୍ମା ହୋଟେଲ ସାମ୍ନାରେ ଗାଡ଼ି ରଖି ପ୍ରମୋଦ, ଶର୍ମା ହୋଟେଲର କର୍ମଚାରୀମାନଙ୍କ ସଙ୍ଗେ କଥାବାର୍ତ୍ତା କଲା । ସେମାନଙ୍କୁ ସେ ଆଗରୁ ଜାଣେ । ପ୍ରାଣ, ସୁର, କର୍ଣ୍ଣ, ଗୋବନ୍ଦା ନାଏକ, ଅମୃତ-ଲାଲ ପ୍ରମୋଦ କଥାରେ ରାଜି ହେଲେ । ଏଣେ ଚଉଧୁରୀ ଗାଡ଼ିରୁ ଓହ୍ଲାଇ ଶର୍ମା ହୋଟେଲ ସାମ୍ନାରେ ବସି ଚା' ପିଉଥିବା ସମୟରେ ଆଉ ପାଖ ଦୋକାନରୁ ପାନ କିଣୁଥିବାବେଳେ ପ୍ରମୋଦ ହୋଟେଲ ପଛପଟେ ତାଙ୍କୁ କପରି ହତ୍ୟା କରିବ, ତାର ସମସ୍ତ ପ୍ଲାନ୍ ହୋଟେଲ ଚାକରମାନଙ୍କ

ସଙ୍ଗେ ଠିକ୍ କରିନେଲା । ସେମାନେ ତା' କଥାରେ ରାଜିହେଲେ ସେମାନଙ୍କୁ ୫୦୦୦ ଟଙ୍କା ମିଳିବ ବୋଲି ପ୍ରମୋଦ ଜବାବ୍ ଦେଲା ଏବଂ ଶର୍ମା ହୋଟେଲର ରୋଷେଇ ରାଜଣା ଚାକର ପିଲା ଏ ହତ୍ୟାକାଣ୍ଡରେ ସହଯୋଗ କରିବେ ବୋଲି ରାଜି ହେଲେ । ସେମାନେ ରାଜି ହେଲାପରେ, ସମସ୍ତେ ହୋଟେଲ ପଛପଟେ ମଦ, ମାଂସ, ଅଣ୍ଡା ଖାଇଲେ । ଖାଇ ସାରିଲାପରେ ପ୍ରମୋଦ କଥା ଅନୁସାରେ ପ୍ରାୟ ରାତି ୧୨ଟା ବେଳକୁ ସେମାନେ ହୋଟେଲରୁ ବାହାରି ଚାଲି ଚାଲି ଜଣ୍ଡେ ଦୂରକୁ ଚାଲିଯାଇ ରାସ୍ତା କଡ଼ରେ ପୋଃଖରୀ ପାଖେ ଅପେକ୍ଷା କରିଥାନ୍ତି ।

ଏଣେ ପ୍ରମୋଦ, ରବି, ବଷ୍ଟୁ ଜଳଖିଆ ଖାଇ ଖଣ୍ଡେ ଖଣ୍ଡେ ପାନ ଧରି ବାହାରିଲେ । ଖଣ୍ଡେଦୂର ଗଲାପରେ ଶର୍ମା ହୋଟେଲର ରୋଷେଇ ଚାକର ପିଲା ଆଗ ପ୍ରସ୍ତାବ ଅନୁଯାୟୀ ଗାଡ଼ି ଅଟକାଇ ଟ୍ରକରେ ଚଢ଼ିଲେ । ରେଢ଼ାଖୋଲ ଠାରୁ ପ୍ରାୟ ୧୫ କିଲୋମିଟର ଗଲାପରେ ପ୍ରମୋଦ ଝାଡ଼ାଯିବା ନାଁରେ ଟ୍ରକ ଅଟକେଇବାକୁ କହିଲା ଏବଂ ତା' କଥା ଅନୁସାରେ ବଷ୍ଟୁ ଟ୍ରକକୁ ପଞ୍ଚାୟତ ରାସ୍ତାରେ କିଛିଦୂର ନେଲାପରେ ଗୋଟେ ଗ୍ରେଟ ପୋଖରୀ ପାଖେ ଅଟକେଇଲା । ଟ୍ରକ ରହିଲା ପରେ ଚଉଧୁରୀ ମଧ୍ୟ ଟ୍ରକରୁ ଓହ୍ଲାଇ ପରିସ୍ରା କରିବାକୁ ବାହାରିଲେ । ସେଇ ସମୟରେ ହଠାତ୍ ପ୍ରମୋଦ ଆଉ ହୋଟେଲରୁ ଆସିଥିବା ରୋଷେଇ ଚାକର ପିଲା ମିଃ ଚଉଧୁରୀଙ୍କୁ ଘେରିଯାଇ, ତାଙ୍କ ପକେଟରୁ ଟଙ୍କା କାଢ଼ି ନେଲେ, ହାତରୁ ଘଣ୍ଟା ଛଡ଼େଇ ନେଲେ । ମିଃ ଚଉଧୁରୀ କିଛି କହିବା ପୂର୍ବରୁ,ହତ୍ୟାକାରୀମାନେ ତାଙ୍କୁ ଖଣ୍ଡେଦୂରକୁ ଟାଣିନେଇ ବିଧା ଗୋଇଠା ମାରିବାରେ ଲାଗିଲେ ।

ସେଇ ସମୟରେ ପ୍ରମୋଦ ଟ୍ରକ ଉପରୁ ଗୋଟେ କାଠ ଫାଳିଆ ଆଣି ଚଉଧୁରୀଙ୍କ ମୁଣ୍ଡରେ ପ୍ରହାର ଦେବାରେ ଲାଗିଲା । ଚଉଧୁରୀ ପ୍ରାଣ ବିକଳରେ ସେମାନଙ୍କ ହାତ ଗୋଡ଼ ଧରୁଥାନ୍ତି । ସବୁ ନେଇଯାଆନ୍ତୁ,ମାତ୍ର ତାଙ୍କୁ ଜୀବନରେ ନ ମାରି ଛାଡ଼ି ଦିଅନ୍ତୁ ବୋଲି ଅନୁରୋଧ କରୁଥାନ୍ତି । ତାଙ୍କର ସମସ୍ତ ଅନୁରୋଧ ନିଘଞ୍ଚ ଜଙ୍ଗଲର ଝିଙ୍କାରୀର ଝିଂ ଝିଂ ଶବ୍ଦ

ସଙ୍ଗେ ମିଶିଗଲା । ପାଞ୍ଚ ଜଣଙ୍କ ମାଡ଼ରେ ଚଉଧୁରୀ ମୃତ୍ୟୁବରଣ କଲେ । ମଲା ପରେ ପ୍ରମୋଦ ତାଙ୍କ ଉପରେ ଟ୍ରକ ଚଳାଇ ଦେବାକୁ ଚେଷ୍ଟା କରିଥିଲା, ମାତ୍ର ସେ ମରିଗଲା ବୋଲି ଠିକ୍ ଭାବେ ଜାଣିଲା ପରେ ସେମାନେ ଚଉଧୁରୀଙ୍କ ଶବକୁ ଗୋଟେ ବୁଦାମୂଳେ ଫୋପାଡ଼ିଦେଲେ । ତାଙ୍କ ହାତରେ ଥିବା ସୁନା ମୁଦିକୁ ପ୍ରମୋଦ କାଢ଼ିନେଲା ।

ଚଉଧୁରୀଙ୍କ ମୃତ୍ୟୁପରେ ବିଷ୍ଣୁ, ରବି ଟ୍ରକ ଧରି ରେଢ଼ାଖୋଲ କଲେଜ ପର୍ଯ୍ୟନ୍ତ ଆସି ଶର୍ମା ହୋଟେଲର ଚାରିଜଣ କର୍ମଚାରୀଙ୍କୁ ଛାଡ଼ି-ଦେଲେ । ସେମାନେ ଚଉଧୁରୀଙ୍କ ପାଖରୁ ମିଳିଥିବା ୮୦୦ ଟଙ୍କା, ଘଣ୍ଟା ନେଇଥିଲେ । ବାକି ଟଙ୍କା ପ୍ରମୋଦ ଆଣିଦେବ ବୋଲି କଥା ହେଲା । ରେଢ଼ାଖୋଲ ପାଖେ ଚାରିଜଣ ହତ୍ୟାକାରୀଙ୍କୁ ଛାଡ଼ି ଦେଲାପରେ ବାକି ତିନିଜଣ ହତ୍ୟାକାରୀ ପ୍ରମୋଦ, ବିଷ୍ଣୁ, ରବି ତା' ପରଦିନ ସନ୍ଧ୍ୟା-ବେଳକୁ କଟକ ଜଗତ୍‌ପୁର ପାଖେ ପହଞ୍ଚି, ସେଇଠି ଟ୍ରକ୍ ରଖି ବିଷ୍ଣୁକୁ ଗାଡ଼ିରେ ଥିବା ଲୁହାଛଡ଼ ଇତ୍ୟାଦି କପର ବିକ୍ରି ହେବ ସେଥିଲାଗି ଗରାଖ ଯୋଗାଡ଼ କରିବାକୁ କଟକ ପଠାଇଲେ । ବିଷ୍ଣୁ କଟକରେ ପହଞ୍ଚି ତ୍ରୈଲୋକ୍ୟ ସାହୁଙ୍କ ସଙ୍ଗେ କଥାବାର୍ତ୍ତା କଲା ଏବଂ ଭଭିନ୍ନ ଲୋକଙ୍କୁ ଲୁହାଛଡ଼, ଆଜ୍‌ବେଷ୍ଟସ୍ ଦେବାର କଥାବାର୍ତ୍ତା କଲା ପରେ ଜଗତପୁରରୁ ଟ୍ରକ ଆଣି କଟକର ମାଲ୍‌ଗୋଦାମରେ ଅନ୍‌ଲୋଡ୍ କରି ବିଭିନ୍ନ ବ୍ୟବସାୟୀଙ୍କ ଠାରୁ ଚୋରିମାଲ୍ ବିକ୍ରି ବାବଦକୁ ପ୍ରାୟ ୩୦,୦୦୦ ଟଙ୍କା ଆଦାୟ କଲା । ସମସ୍ତ ଜିନିଷ ବିକ୍ରି ହେଲାପରେ, ପ୍ରମୋଦ ୧୦,୦୦୦ ଟଙ୍କା ଧରି ମାନେଶ୍ୱର ଫେରିଲା । ରବି, ବିଷ୍ଣୁ ଟ୍ରକର ନମ୍ବର ପ୍ଲେଟ୍ ବଦଳାଇ ତାର ପୂର୍ବ ନମ୍ବର ପ୍ଲେଟ୍ ଲଗାଇ-ଦେଲେ ଏବଂ ହିନେ ଦୁଇଦିନ ପରେ ଟ୍ରକର ମାଲିକଙ୍କୁ ତାଙ୍କ ଟ୍ରକ୍ ଫେରାଇଦେଲେ ।

ଟ୍ରକ୍ ଫେରାଇ ଦେଲାପରେ ବିଷ୍ଣୁ ତା' ପରିବାରକୁ ଗୋଟିଏ ଟାକ୍‌ସିରେ ଧରି ପୁରୀ ଆସିଲା ଏବଂ ପୁରୀ ସହର ବଳଭଦ୍ର ଗଳିରେ ଗୋଟିଏ ଘର ଭଡ଼ା ନେଇ ରହିଲା । ଏଣେ ପ୍ରମୋଦ ନେଇଥିବା ସୁନା

ମୁଦିଟିକୁ ଶର୍ମା ତା'ର ଦ୍ୱିତୀୟ ସ୍ତ୍ରୀ ସାବିତ୍ରୀ ପାଇଁ ଦୁଇଟି ନାକଫୁଲ ସମ୍ବଲପୁରରେ ତିଆରି କରି ମାନେଶ୍ୱରରେ ପଠାଇଥିଲା । ଶର୍ମା ହୋଟେଲର ଚାକରମାନେ ପୂର୍ବପରି ଶର୍ମା ହୋଟେଲ କାମରେ ଲାଗିଗଲେ ।

ତଦନ୍ତକାରୀ ଅଫିସର ମିଃ ମହାନ୍ତି, ଲୁହାଛଡ଼ ବନ୍ଦିରୁ ଖବର ସଂଗ୍ରହ କରି, ଅଳ୍ପଦିନ ମଧ୍ୟରେ ସମସ୍ତ ହତ୍ୟାକାରୀଙ୍କୁ ଧରିବାରେ ସକ୍ଷମ ହୋଇଥିଲେ । ପ୍ରତ୍ୟେକ ସ୍ଥାନରେ ସାକ୍ଷୀମାନେ ତଦନ୍ତକାରୀ ଅଫିସରଙ୍କ ଆଗରେ ହତ୍ୟାକାରୀଙ୍କ ବିଷୟରେ କହିଥିଲେ । ମିଃ ଚଉଧୁରୀଙ୍କ ବ୍ୟାଗ୍ ଏବଂ ଅନ୍ୟ କେତେକ କାଗଜପତ୍ର ହତ୍ୟାକାରୀ ବିଷ୍ଣୁ ମୁଦୁଲି ଘରୁ ମିଳିଥିଲା । ତାଙ୍କର ରକ୍ତଭିଜା ଲୁଗା, ଗଞ୍ଜି ମଧ୍ୟ ହତ୍ୟାକାରୀମାନେ ତଦନ୍ତକାରୀ ଅଫିସରଙ୍କୁ ଦେଖାଇଥିଲେ ।

ମାନେଶ୍ୱରର ଲୁଧୁବାଡ଼ି, ସାବିତ୍ରୀ, ପୁରୋହିତ ସମସ୍ତେ ସାକ୍ଷ୍ୟ ଦେଲେ । ତଦନ୍ତକାରୀ ଅଫିସର ରାଜ୍ୟ ଫୋରେନ୍‌ସିକ୍ ଅଫିସରମାନଙ୍କ ସାହାଯ୍ୟ ନେଇ ହତ୍ୟାକାଣ୍ଡ ଘଟିଥିବା ସ୍ଥାନକୁ ତନ୍ ତନ୍ କରି ପରୀକ୍ଷା କରିଥିଲେ । ଟ୍ରକ ଚକାର ଚିହ୍ନର ଫଟୋ ନିଆଯାଇଥିଲା । ହତ୍ୟାକାରୀ-ମାନଙ୍କର ପୋଷାକ ପରିଚ୍ଛଦ ପ୍ରଭୃତି ଜବତ ହେଲା । ସେମାନେ ବ୍ୟବହାର କରିଥିବା ଲୁହାଛଡ଼, ଆଜବେଷ୍ଟସ ପ୍ରଭୃତି ଜବତ କରାଗଲା ।

ଗୁଣ୍ଡୁକୁ ଆଉ ମୁଣ୍ଡୁକୁ ସାକ୍ଷ୍ୟଦେଇ କହିଥିଲେ ଯେ ପ୍ରମୋଦ, ତାଙ୍କୁ ଚଉଧୁରୀଙ୍କୁ ହତ୍ୟା କରିବା ପାଇଁ ୧୦୦୦ ଟଙ୍କାର ପ୍ରଲୋଭନ ଦେଖାଉଥିଲା । ସାବିତ୍ରୀକୁ ପ୍ରମୋଦ ଦେଇଥିବା ନାକଫୁଲ ସାବିତ୍ରୀ ବାହାର କରି ତଦନ୍ତକାରୀ ଅଫିସରଙ୍କୁ ଦେଇଥିଲା । ସମସ୍ତ ସାକ୍ଷ୍ୟ ପ୍ରମାଣ ଗ୍ରହଣ କଲାପରେ, ପୁଲିସ୍ ହତ୍ୟାକାରୀଙ୍କ ବିରୁଦ୍ଧରେ ଭାରତୀୟ ପିଙ୍ଗଲ କୋଡ଼ର ୩୯୬/୧୦୨ (ବି) /୧୧୪ ଦଫାରେ କେସ ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ଆଗତ କଲେ ।

ଏଇ ଚାଞ୍ଚଲ୍ୟକର ହତ୍ୟାକାଣ୍ଡର ବିଚାର ବହୁଦିନ ଧରି ଚାଲିଲା । ବିଚାର ସମୟରେ ଜଜ୍ ସାହେବଙ୍କ କୋର୍ଟ ଅଫିସ୍ ଦେଖଣାହାରୀଙ୍କ

ଭିତରେ ଭରପୂର ହୋଇ ଉଠୁଥାଏ । ସମସ୍ତେ ଜାଣିବାକୁ ବ୍ୟସ୍ତ ଏପରି ନିର୍ମମ ନିର୍ଦ୍ଦୟ ହତ୍ୟାକାରୀ କି ପ୍ରକାର ଦଣ୍ଡ ପାଉଛନ୍ତି ।

ବର୍ଷର ଶେଷଭିରେ ବିଗୃରପତି ସମସ୍ତ ହତ୍ୟାକାରୀଙ୍କୁ ବିଭିନ୍ନ ଦଫାରେ କାରାଦଣ୍ଡ ଦେଲେ । ଏକ ଶୃଙ୍ଖଳିତ ହତ୍ୟାକାଣ୍ଡରେ ଲିପ୍ତ-ଥିବା ହତ୍ୟାକାରୀମାନଙ୍କୁ ଦଣ୍ଡ ଦେଇପାରିଥିବା ହେତୁ ମିଃ ମହାନ୍ତିଙ୍କୁ ସମସ୍ତେ ପ୍ରଶଂସା କରିଥିଲେ ।



## ଟ୍ରେନ୍

ଉତ୍କଳସୂତ୍ର

ମାଡ୍ରାସ୍-ହାଓଡ଼ା-ମେଲ୍ ଛାଡ଼ିବାପାଇଁ ଉଚ୍ଚାସ୍ୱ ଘଣ୍ଟି ଟିନ୍ ଟିନ୍ ହୋଇ ବାଜିଉଠିଲା ପରେ ଖୋର୍ଦ୍ଧାରୋଡ୍ ରେଲୱେ ଷ୍ଟେସନ କୋଳାହଳମୟ ହୋଇଉଠିଲା । ଟ୍ରେନ୍-ଯାତ୍ରୀମାନେ ନିଜ ନିଜ କମ୍ପାର୍ଟମେଣ୍ଟ ଭିତରକୁ ପ୍ରବେଶ କରିବା ପାଇଁ ଠେଲାପେଲା ଭିତରେ ନିଜ ନିଜର ବାଟ କାଢ଼ିଥାନ୍ତି । ମଝିରେ ମଝିରେ କୁଲିମାନେ ଯାତ୍ରୀ-ମାନଙ୍କ ଲଗେଜକୁ ଗାଡ଼ି ଛାଡ଼ିବାର ଶେଷ ମୁହୂର୍ତ୍ତରେ କମ୍ପାର୍ଟମେଣ୍ଟର ପ୍ରବେଶ ପଥ ପାଖେ ଜମାକରି ଯିବା ଆସିବାରେ ଅସୁବିଧା ସୃଷ୍ଟି କରୁଥାନ୍ତି । ବିଶାଳକାୟ ଏଇ ଟ୍ରେନ୍‌ରେ ଯାତ୍ରୀମାନଙ୍କର ପ୍ରବଳ ଭିଡ଼ । ପ୍ରତ୍ୟେକ କମ୍ପାର୍ଟମେଣ୍ଟରେ ପାଦ ରଖିବାକୁ ସ୍ଥାନ ଟିକିଏ ନ ଥାଏ । ଏପରିକି ପ୍ରଥମ ଶ୍ରେଣୀ ରିଜର୍ଭ କମ୍ପାର୍ଟମେଣ୍ଟର କୋରି-ଡରରେ ଯାତ୍ରୀମାନଙ୍କ ପ୍ରବଳ ଭିଡ । ଗାର୍ଡ଼ ଟି:ଟି:ଇ: ମାନଙ୍କ ନିର୍ଦ୍ଦେଶ ସତ୍ତ୍ୱେ ବି ଯାତ୍ରୀମାନେ ସେମାନଙ୍କ ଟିକେଟ୍ ଆଉ ରିଜର୍ଭେସନ ପାଇଁ ଦେଇଥିବା ଆଗୁଆ ରସିଦ୍ ଦେଖାଉନଥାନ୍ତି । ପ୍ରତ୍ୟେକ ବର୍ଷ ଦୁର୍ଗାପୂଜା ସମୟରେ ଦକ୍ଷିଣ-ପୂର୍ବ ରେଲୱେରେ ଅସମ୍ଭବ ଭିଡ଼ ହୁଏ । ସେ ବର୍ଷ ମଧ୍ୟ ନାହିଁ ନଥିବା ଭିଡ଼ । ମେଲ୍ ଗାଡ଼ି ଖୋର୍ଦ୍ଧାରୋଡ଼୍ ଆଉଟର ସିଗ୍‌ନାଲ ଛାଡ଼ିଲା ପରେ ଗାଡ଼ିର ବେଗ ବଢ଼େଇ ଦେଲା । ସେ ପର୍ଯ୍ୟନ୍ତ ଯାତ୍ରୀମାନେ ନିଜ ନିଜର ସିଟ୍ ଠିକ୍ କରିପାରିନଥାନ୍ତି । ଗାର୍ଡ଼ମାନେ ରିଜର୍ଭେସନ ଚାର୍ଟ ଧରି କମ୍ପାର୍ଟମେଣ୍ଟ ବୁଲି ଯାତ୍ରୀମାନଙ୍କୁ ସେମାନଙ୍କ ସିଟ୍‌ରେ ବସାଇ ଦେବାପାଇଁ ଚେଷ୍ଟିତ ଥାନ୍ତି ।

ପ୍ରଥମ-ଶ୍ରେଣୀ କମ୍ପାର୍ଟମେଣ୍ଟ୍ ଚେକ୍ କରିବା ସମୟରେ ଗାର୍ଡ଼ ସାହେବ ଦେଖିଲେ, ପାଞ୍ଚଜଣ ଯୁବକ ସେଇ କମ୍ପାର୍ଟମେଣ୍ଟର କୋରି-ଡରରେ ଠିଆ ହୋଇଥା'ନ୍ତି । ସମସ୍ତଙ୍କ ହାତରେ ଟିକେଟ୍ । ଖୋର୍ଦ୍ଧା ରୋଡ଼୍‌ରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଟିକେଟ କରି ଭୁବନେଶ୍ୱର ପାଖେ ଓହ୍ଲେଇ ଯିବେ । ରାତି ସମୟରେ ପ୍ରଥମ ଶ୍ରେଣୀ ରିଜର୍ଭ କମ୍ପାର୍ଟମେଣ୍ଟ ଭିତରେ ବିନା ରିଜର୍ଭେସନରେ ବସେଇ ଦିଆଯାଏ ନାହିଁ । ପାଞ୍ଚଜଣଯାକ ଯୁବକ ଭୁବନେଶ୍ୱର ଷ୍ଟେସନରେ ଓହ୍ଲେଇଯିବା କଥା ଶୁଣିଲା ପରେ ଏବଂ ଟିକେଟ୍ ଦେଖିଲା ପରେ ଗାର୍ଡ଼ ସାହେବ ଅନ୍ୟ ସଂଲଗ୍ନ କମ୍ପାର୍ଟମେଣ୍ଟକୁ ଗଲେ । ଯୁବକମାନେ ଗାର୍ଡ ସାହେବଙ୍କ ଗତିବିଧି ଉପରେ ତୀକ୍ଷ୍ଣ ନଜର ରଖିଲାପରି ଯାତ୍ରୀମାନେ ଅନୁଭବ କରୁଥିଲେ ମଧ୍ୟ କାହାରି ସନ୍ଦେହ ନଥିଲା । ଦୁର୍ଗାପୂଜା ବେଳେ ଟ୍ରେନ୍‌ରେ ଏହିପରି ପ୍ରବଳ ଭିଡ଼ ହୁଏ । ଏକଥା ସମସ୍ତେ ଜାଣନ୍ତି । ସୁବିଧା ଥିଲେ ଯାତ୍ରୀମାନେ ନିଜ ନିଜ ଭିତରେ ସିଟ୍ ଆଡ଼ଜଷ୍ଟ୍ କରି ନେଇଥାନ୍ତି ।

ସେ ଦିନ ଥାଏ ମହାନବମୀ । ଦଶହରା ଲାଗି ଓଡ଼ିଶାର ପ୍ରତ୍ୟେକ ବଡ଼ ସହରରେ ପ୍ରବଳ ଜନସମାଗମ । ଗାଁ ଗଣ୍ଡାରେ ଦୁର୍ଗୋତ୍ସବ । ଶାରଦୀୟ ଆକାଶରେ ନବମୀ ଚନ୍ଦ୍ର । ମାଡ୍ରାସ୍-ହାଓ୍ୱାଡ଼ାମେଲ ଦ୍ରୁତ ଗତିରେ ଭୁବନେଶ୍ୱରଆଡ଼େ ଚାଲିଥାଏ । ଦୁଇପଟେ ସବୁଜ ଧାନକ୍ଷେତ । ଜହ୍ନ ଆଲୁଅରେ ଧାନ କ୍ଷେତର ସବୁଜିମା ଆହୁରି ସୁନ୍ଦର ଦିଶୁଥାଏ । ରାତି ପ୍ରାୟ ୯ଟା ପାଖାପାଖି । ଯାତ୍ରୀମାନେ ନିଜ ନିଜର ବେଡ଼ିଂ ସିଟ୍ ଉପରେ ବିଛାଇ ଦେଇ ଶୋଇବା ପାଇଁ ପ୍ରସ୍ତୁତ ହେଉଥିଲେ । ଆଉ କେତେକ ଯାତ୍ରୀ କମ୍ପାର୍ଟମେଣ୍ଟର ଝରକା ଦେଇ ଜହ୍ନ ଆଲୁଅରେ ସବୁଜ ଧାନକ୍ଷେତ, ପାଖ ଗାଁରୁ ଭାସି ଆସୁଥିବା ସଂକୀର୍ତ୍ତନ ସ୍ୱର, ମଝିରେ ମଝିରେ ମାଇକ୍‌ରୁ ପ୍ରଚାର ହେଉଥିବା ସିନେମା ସଙ୍ଗୀତ ଶୁଣି ମୁଗ୍ଧ ହେଉଥିଲେ । ଗାଡ଼ି ରେଢାଙ୍ଗ୍ ଷ୍ଟେସନ୍ ଛାଡ଼ିଲା ପରେ ପ୍ରାୟ ଯାତ୍ରୀ ନିଜ ନିଜ ସିଟ୍‌ରେ ବସିଯାଇଥାନ୍ତି ଓ କେତେକ ଦୂରଯାତ୍ରୀ ଶୋଇବା ପାଇଁ ପ୍ରସ୍ତୁତ ହେଉଥାନ୍ତି ।

ମେଲ୍‌ଟୋଡ଼ ରେଡାଙ୍ଗ ଆଉ ଲିଙ୍ଗରାଜ ରୋଡ ରେଲଓ୍ୱେ ଷ୍ଟେସନ୍ ମଧ୍ୟବର୍ତ୍ତୀ ସ୍ଥାନରେ ପହଞ୍ଚିଲା ବେଳକୁ ହଠାତ୍ ଗାଡ଼ିର ଦ୍ରୁତଗତି ମନ୍ଥର ହେବାରେ ଲାଗିଲା । ଗାଡ଼ିର ଗତି ମନ୍ଥର ହେବା ସଙ୍ଗେ ସଙ୍ଗେ ଗୋଟିଏ ପ୍ରଥମ ଶ୍ରେଣୀ କମ୍ପାର୍ଟମେଣ୍ଟ ମଧ୍ୟରୁ ଯାତ୍ରୀମାନଙ୍କ ହା'ହୁତା ଶବ୍ଦ ସାଙ୍ଗକୁ ବମ୍ ଫୁଟିବାର ଶବ୍ଦ ! ପାଖ କମ୍ପାର୍ଟମେଣ୍ଟ ଯାତ୍ରୀମାନେ ମୁହଁ ବୁଲେଇ ଘଟଣା ବିଷୟରେ ଜାଣିବାକୁ ଚେଷ୍ଟା କଲାବେଳେ ସେମାନଙ୍କ ଆଡ଼କୁ ପିସ୍ତଲରୁ ଗୁଳି ମାଡ଼ । ଯାତ୍ରୀମାନେ ଭୟରେ ବାହାରିବାକୁ ଡରିଲେ । ଟ୍ରେନ୍‌ରେ ଚଢ଼ିଲ – ଡକାୟତି ଚାଲିଛି । ଡାକୁମାନେ ଏଇ ସମୟ ଭିତରେ କମ୍ପାର୍ଟମେଣ୍ଟ ମଧ୍ୟରେ ବସିଥିବା ଯାତ୍ରୀମାନଙ୍କ ଦେହରୁ ସୁନା-ଗହଣା, ଘଣ୍ଟା, ବାକ୍‌ସ ଭାଙ୍ଗି ଟଙ୍କା-ସୁନା, ଯାହା ପାଖରେ ଯେଉଁସବୁ ମୂଲ୍ୟବାନ ଜିନିଷ ଥିଲା, ଲୁଟି କରିବାକୁ ଲାଗିଲେ । ଲୁଟି କଲାବେଳେ ସେମାନେ ମଧ୍ୟ ଗୋଟାକ ପରେ ଗୋଟେ ବମ୍ ଫୁଟାଉଥାନ୍ତି । ଶାନ୍ତ ସରଳ ଯାତ୍ରୀମାନେ ପ୍ରାଣ ଭୟରେ ସଶସ୍ତ୍ର ଡକାୟତମାନଙ୍କୁ ସେମାନଙ୍କ ସମସ୍ତ ମୂଲ୍ୟବାନ ଜିନିଷ, ଟଙ୍କା ପଇସା ଦେଇ ଦେଲାପରେ ନିଜର ପ୍ରାଣ ରକ୍ଷାକଲେ ।

ମେଲ୍ ଗାଡ଼ି ଧୀରେ ଧୀରେ ବନ୍ଦ ହେଲାବେଳକୁ ଡାକୁମାନେ ସମସ୍ତ ଜିନିଷ ଧରି ଟ୍ରେନ୍‌ରୁ ଓହ୍ଲାଇ ଯାଇଥାନ୍ତି । ଯିବା ସମୟରେ ମଧ୍ୟ ସେମାନେ ଯାତ୍ରୀମାନଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ବମ୍ ଫୁଟାଇ-ଥିଲେ । କିଛି ଅଳ୍ପଅଟରେ ସେମାନେ ଅସ୍ତ୍ରେ ଆସ୍ତେ ଲୁଚିଗଲେ । ଗାର୍ଡ଼ ଆଉ ଟି. ଟି. ଆଇ.ମାନେ ଲୁଟ୍ ହୋଇଥିବା କମ୍ପାର୍ଟମେଣ୍ଟ ପାଖରେ ପହଞ୍ଚି କେବଳ ଯାତ୍ରୀମାନଙ୍କ ଆର୍ତ୍ତ ଚିତ୍କାର, କରୁଣ କ୍ରନ୍ଦନ ଶୁଣିବାକୁ ପାଇଥିଲେ । କେତେକ ଯାତ୍ରୀ ବମ୍ ମାଡ଼ରେ ଆହତ ହୋଇ ରକ୍ତାକ୍ତ ଅବସ୍ଥାରେ ଥାନ୍ତି । ମହିଳା ଯାତ୍ରୀମାନେ ସେମାନଙ୍କ ପରିଧାନ ଗହଣା-ଗାଣ୍ଠି ହରେଇଥିବା ହେତୁ କରୁଣ କ୍ରନ୍ଦନ କରୁଥାନ୍ତି । କମ୍ପାର୍ଟମେଣ୍ଟର କେତେକ ଯାତ୍ରୀ ଗାର୍ଡ଼ସାହେବଙ୍କ ଆଗେ ଡାକୁମାନଙ୍କ ବିଷୟରେ ବର୍ଣ୍ଣନା କରିଥିଲେ—ସେମାନଙ୍କ ବେଶ ପୋଷାକ, କହିବା କଥା ଏବଂ ହାତରେ ଧରିଥିବା ମାରଣାସ୍ତ୍ର । ଗାର୍ଡ଼ ମଧ୍ୟ ଜାଣିବାକୁ ପାଇଥିଲେ ଯେ, ଯେଉଁ

ପାଞ୍ଚଜଣ ଯୁବକ ଭୁବନେଶ୍ୱରଠାରେ ଓହ୍ଲାଇଯିବେ ବୋଲି ତାଙ୍କୁ ପାଞ୍ଚୋଟି ପ୍ରଥମ ଶ୍ରେଣୀର ଟିକେଟ୍ ଦେଖାଇଥିଲେ ସେଇମାନେହିଁ ଥିଲେ ଡାକୁ ଦଳ । ତା'ଛଡ଼ା ଯାତ୍ରୀମାନଙ୍କଠାରୁ ସେ ଅନ୍ଧର ଜାଣିଥିଲେ ଯେ, ଜଣେ ଡାକୁ ବମ୍ ଫିଙ୍ଗି ଫିଙ୍ଗି ଗୋଟେ ବମ୍ ତା' ହାତରେ ଫୁଟିଯିବା ଦ୍ୱାରା ତାର ଗୋଟିଏ ହାତ ଯଥେଷ୍ଟ କ୍ଷତଗ୍ରସ୍ତ ହୋଇଛି । କିଛି ସମୟ ଟ୍ରେନ୍ ଅଟକଲା ପରେ, ଗାଡ଼ି ଭୁବନେଶ୍ୱର ଅଡ଼େ ପୁଣି ଚାଲିଲା । ଭୁବନେଶ୍ୱର ଷ୍ଟେସନରେ ପହଞ୍ଚିଲା ପରେ ଯାତ୍ରୀ ଏବଂ ଗାର୍ଡ଼ ଆସି ଭୁବନେଶ୍ୱର ରେଲୱେ ପୋଲିସ ଷ୍ଟେସନରେ ସମସ୍ତ ଘଟଣା ବିଷୟରେ ପ୍ରାଥମିକ ରିପୋର୍ଟ ଦେଇଥିଲେ ।

ଜି:ଆର୍:ପି: ଥାନା ଇନ୍‌ଚାର୍ଜ ଅଫିସର ପ୍ରାଥମିକ ରିପୋର୍ଟ ନେଲାପରେ······

ପ୍ରାୟ ରାତି ସାଢ଼େ ଦଶଟା ବେଳକୁ ଏସ୍:ପି: ଭୁବନେଶ୍ୱରଙ୍କ ଘର ଟେଲିଫୋନ୍ ବାଜି ଉଠିଥିଲା । ରାତିର ଆରମ୍ଭ ପ୍ରହରରେ ଏସ୍.ପି.ଙ୍କ ଘର ଟେଲିଫୋନ୍ ବାଜି ଉଠିବାରେ ବିଶେଷ କିଛି ଗୁରୁତ୍ୱ ନଥାଏ । ସବୁ ସମୟରେ ଫୋନ୍ ଆସେ ଏବଂ ଏଇ ଫୋନ୍ ଆସିବା ମଧ୍ୟରାତି ପର୍ଯ୍ୟନ୍ତ ଚାଲେ । ଭୁବନେଶ୍ୱର ସହରର ଦଶହରା ଉତ୍ସବରେ ପୋଲିସ ବ୍ୟବସ୍ଥା ଦେଖି ଏସ୍.ପି. ସେଇମାତ୍ର ଘରକୁ ଫେରୁଥାନ୍ତି । ଗାଡ଼ିରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଫୋନ୍ ଆଟେଣ୍ଡାଣ୍ଟ ଖବର ଦେଲା ଯେ, ଓ. ସି. ଜି. ଆର୍. ପି. ଅତ୍ୟନ୍ତ ଜରୁରୀ କାମ ପାଇଁ ଟେଲିଫୋନରେ ଡାକୁଛନ୍ତି । ଏସ.ପି. ସାହେବ ସଙ୍ଗେ ସଙ୍ଗେ ଟେଲିଫୋନ୍ ଧରିଲେ ଏବଂ ସମସ୍ତ ଘଟଣା ଓ. ସି. ଜି. ଆର୍. ପି. ତାଙ୍କୁ ସଂକ୍ଷେପରେ କହି ସାହାଯ୍ୟ ପାଇଁ ଅନୁରୋଧ କଲେ । ଟ୍ରେନ୍ ଡକାୟିତି !

ଟ୍ରେନରେ ହେଉ କିମ୍ବା ବାହାରେ ହେଉ, ତାହା ଏସ୍.ପି:ଙ୍କ ପାଇଁ ଏକ ବଡ଼ ଧରଣର ଡକାୟିତି ଥିଲା । ସେ ସଙ୍ଗେ ସଙ୍ଗେ ତାଙ୍କ ପେଟ୍ରୋଲିଂ ଫିଆଟ୍ ଗାଡ଼ି ବାହାର କଲେ । କ୍ୟାପିଟାଲ ଥାନାକୁ ଫୋନ କରି ଇନସ୍‌ପେକ୍ଟର ମିଶ୍ରଙ୍କୁ ସଙ୍ଗେ ସଙ୍ଗେ ଆସିବାକୁ ନିର୍ଦ୍ଦେଶ

ଦେଇ, ପୁରୁଣା ଭୁବନେଶ୍ୱର ଓ.ସି. ରାଉତ ବାବୁଙ୍କୁ ଖବର ଦେଲେ । ପ୍ରାୟ ଦଶ ମିନିଟ୍ ମଧ୍ୟରେ ଇନସ୍‌ପେକ୍ଟର ମିଶ୍ର, ଓ.ସି. ରାଉତ ବାବୁ ସଙ୍ଗରେ ଜଣେ ଏ.ଏସ୍.ଆଇ. ଆଉ ଜଣେ ଏସ୍.ଆଇଙ୍କୁ ଧରି ଏସ୍.ପିଙ୍କ ଆଠ ନମ୍ବର ଫରେଷ୍ଟପାର୍କ କୋଠୀ ପାଖେ ପହଞ୍ଚିଗଲେ । ଅନ୍ୟ ଅଫିସରମାନେ ଦୁର୍ଗାପୂଜା ପାଇଁ ବ୍ୟସ୍ତ ଥାନ୍ତି ।

ଏସ୍.ପି.ଙ୍କ ହାତରେ ସମୟ ବହୁତ କମ୍ । ଡାକୁମାନେ ମାତ୍ର ଅଧଘଣ୍ଟାକ ତଳେ ଟ୍ରେନରୁ ଓହ୍ଲାଇ ଯାଇଥାନ୍ତି । ଯେଉଁଆଡ଼େ ଯିବେ ଚାଲି ଚାଲି, କାରଣ ରେତାଙ୍ଗ ଷ୍ଟେସନରୁ ଜାଖପୁ ରାଜପଥକୁ ଆସିବାକୁ ଅଧଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଲାଗିବ । ତା' ଛଡ଼ା ଯେଉଁ ସ୍ଥାନରୁ ଡାକୁମାନେ ଓହ୍ଲାଇଗଲେ,ସେଠାରୁ ଖୋର୍ଦ୍ଧାରୋଡ଼ ଫେରିବାକୁ ହେଲେ ଅନ୍ତତଃ ଦୁଇ ଘଣ୍ଟାରୁ ଅଧିକ ସମୟ ଲାଗିବ । ସବୁ କଥାକୁ ବିଚାର କରି ଏସ୍. ପି. ନିଜେ ଇନସ୍‌ପେକ୍ଟର ମିଶ୍ର ଆଉ ଏ.ଏସ୍.ଆଇ ମହାପାତ୍ରଙ୍କୁ ପାଟ୍ରୋଲିଂ ଗାଡ଼ିରେ ଧରି ଜାଖପୁ ରାଜପଥ ଦେଇ ରେତାଙ୍ଗ୍ ଷ୍ଟେସନ୍ ଆଡ଼େ ବାହାରିପଡ଼ିଲେ । ତାଙ୍କ ନିର୍ଦ୍ଦେଶରେ ପୁରୁଣା ଭୁବନେଶ୍ୱର ଓ.ସି. ମଧ୍ୟ ରାଉତ ତାଙ୍କ ପୁଲିସ-ଷ୍ଟେସନ୍ ଜିପ୍‌ରେ ସଦଳବଳେ, ପୁରୁଣା ଭୁବନେଶ୍ୱରଠାରୁ ହରିରାଜପୁର ଦେଇ ଜଟଣୀକୁ ଯାଇଥିବା ରାସ୍ତାଦେଇ ବାହାରି ପଡ଼ିଲେ । ସାଧାରଣତଃ ଏହି ରାସ୍ତାଟି ରାତିରେ ଅତ୍ୟନ୍ତ ନିର୍ଜନ ହୋଇଥିବା ଯୋଗୁଁ ବହୁ ସମୟରେ ଡାକୁଦଳ ଏଇ ବାଟଦେଇ ଯିବାଆସିବା ଖବର ଆଗରୁ ପୁଲିସକୁ ଜଣା ।

ଏସ୍.ପି. ସାହେବଙ୍କ ଗାଡ଼ିରେ ଓ୍ୟାର୍ଲେସ୍ ସେଟ୍ ଥାଏ । ଓ.ସି. ଭୁବନେଶ୍ୱର ମଧ୍ୟ ତାଙ୍କ ଗାଡ଼ିରେ ଓ୍ୟାର୍‌ଲେସ୍ ଧରିଲେ । ସବୁ ସମୟରେ ସେଟ୍ ଖୋଲି ରଖିବାକୁ ନିର୍ଦ୍ଦେଶ ଥିଲା । ତାହାଛଡ଼ା ଏସ୍.ପି.ଙ୍କ ନିର୍ଦ୍ଦେଶରେ ଭୁବନେଶ୍ୱର ମେନ୍ ବେତାର କଣ୍ଟ୍ରୋଲ ସେଦିନ ରାତିପାଇଁ ଖୋଲା ରଖିବାକୁ ନିର୍ଦ୍ଦେଶ ଦିଆଗଲା ଏବଂ ସବୁ ସମୟରେ ଏସ୍.ପି.ଙ୍କ ଗାଡ଼ି ଓ୍ୟାର୍ଲେସ୍ ସଙ୍ଗେ କଣ୍ଟାକ୍ଟ ରଖିବାକୁ ମଧ୍ୟ କୁହାଗଲା । ଏ ସମସ୍ତ ବନ୍ଦୋବସ୍ତ ଖୁବ୍ କମ୍ ସମୟ ମଧ୍ୟରେ ବ୍ୟବସ୍ଥା

କରି ଏସ୍. ପି. ଗାଡ଼ିଧରି ବାହାରି ପଡ଼ିଲେ । ସଙ୍ଗରେ ଥାଏ ତାଙ୍କର ୮-ଏମ୍.ଏମ୍. ଗୁଳିଭର୍ତ୍ତି ପିସ୍ତଲ । ଇନ୍‌ସ୍‌ପେକ୍ଟର ମିଶ୍ର ହାତରେ ଧରିଥିଲେ ୩୮ ରିଭଲଭର୍ । ଡାକୁମାନେ ଯେ ସଶସ୍ତ୍ର—ଏକଥା ସମସ୍ତଙ୍କୁ ଜଣା, ଦରକାର ପଡ଼ିଲେ ସେମାନେ ସାମ୍ନାସାମ୍ନି ପୁଲିସଙ୍କୁ ଗୁଳିକରି ଅନ୍ତର୍ଧାନ ହୋଇଯିବେ ।

ଭୁବନେଶ୍ୱର ସଦର ଗୁଡ଼ ଏସ୍.ପି.ଙ୍କ ଫିଆଟ ପେଟ୍ରୋଲିଂ ଗାଡ଼ି ଖୋର୍ଦ୍ଧା-ଭୁବନେଶ୍ୱର ରାଜପଥ ଦେଇ ଦ୍ରୁତଗତିରେ ଚାଲିବାକୁ ଆରମ୍ଭ କଲା । ଡ୍ରାଇଭର ନଥିବା ଯୋଗୁ ଏସ୍.ପି. ସାହେବ ନିଜେ ଗାଡ଼ି ଚଲାଉଥିଲେ । ହାତରେ ସମୟ କମ୍, ପୁଣି ଡ୍ରାଇଭର ଖୋଜିବାକୁ ହେଲେ "ଫାଗ ବାନ୍ଧୁ ବାନ୍ଧୁ କଟେଯିରୁ ବରଖାସ୍ତ" ଯୋଗ ହୋଇ-ପାରେ । ତାଙ୍କ ଗାଡ଼ି ରାଜପଥରେ କିଛି ବାଟ ଗଲାପରେ ଜାଆଁଳା ଗାଁର ଅଳ୍ପ ଦୂରରୁ ଯେଉଁ ଗ୍ରେଟ ରାସ୍ତାଟି ଧାନବିଲ ମଝିଦେଇ ରାଜପଥରୁ ରେଡ଼ାଙ୍ଗ ରେଲ୍‌ଷ୍ଟେସନକୁ ଯୋଗ କରିଛି, ସେଇ କଚ୍ଚାରାସ୍ତା ଦେଇ ଚାଲିଲା । ନିର୍ଜନ ରାତିରେ ଫିଆଟ୍ ଗାଡ଼ିର ଘର୍‌ଘର ଶବ୍ଦ ଛଡ଼ା ସବୁଜ ଧାନକ୍ଷେତଘେରା ପରିବେଶ ଥିଲା ନୀରବ, ନିସ୍ତବ୍ଧ । ଦୂର ଗାଁରୁ କୀର୍ତ୍ତନ ଶବ୍ଦ—ହରିବୋଲ ଶବ୍ଦ ଯାହା ଶୁଣା ଯାଉଥାଏ ।

ଗାଡ଼ି ଚାଲୁଥିବା ସମୟରେ ଇନ୍‌ସ୍‌ପେକ୍ଟର ମିଶ୍ର ଓ୍ୟାର୍‌ଲେସ୍ ମାଧ୍ୟମରେ ଭୁବନେଶ୍ୱର ଜି.ଆର୍.ପି.ଓ.ସି.ଙ୍କଠାରୁ ଡାକୁମାନଙ୍କ ବିଷୟ ସମସ୍ତ ଖବର ବୁଝି ନେଇଥାନ୍ତି । ଗାଡ଼ି ଚାଲିଥାଏ, ଏଣେ ଓ୍ୟାରଲେସରେ ମଧ୍ୟ ଖବର ସଂଗ୍ରହ ଚାଲିଥାଏ । ମିଃ ମିଶ୍ର, ଡାକୁମାନେ ପିନ୍ଧିଥିବା ପୋଷାକ, ସେମାନଙ୍କ ଉଚ୍ଚତା, ରଙ୍ଗ, କଥାବାର୍ତ୍ତା ଏ ସମସ୍ତ ବିଷୟରେ ଭୁବନେଶ୍ୱର କଣ୍ଟ୍ରୋଲ ରୁମ୍ ଜରିଆରେ ଜି.ଆର୍.ପିରୁ ବୁଝିନେଲେ । ପ୍ରାଟ୍ରୋଲିଂ ଫିଆଟ୍ ଗାଡ଼ି କିଛି ବାଟ ଏଇ କଚ୍ଚା ରାସ୍ତାରେ ଗଲାପରେ ଷ୍ଟେସନକୁ ବାଟ ହରାଇ ବସିଲା । ବାଧ୍ୟହୋଇ ଏସ୍. ପି. ଗାଡ଼ି ଗୋଟେ ଗାଁ ଭିତରକୁ ନେଲେ । ସେତେବେଳେ ଗାଁ ମୁଣ୍ଡ ଠାକୁରାଣୀଙ୍କ ପାଖେ ଗାଁ ଲୋକମାନେ ନବମୀ ଜନ୍ତାଲ କରୁଥାନ୍ତି । ଡକାୟତି କଥା ଶୁଣି

ସଙ୍ଗେ ସଙ୍ଗେ ଦୁଇଜଣ ବ୍ୟକ୍ତି ପୁଲିସଙ୍କୁ ସାହାଯ୍ୟ କରିବାପାଇଁ ବାହାରି ପଡ଼ିଲେ । ସେମାନଙ୍କ ମଧ୍ୟରୁ ଜଣେ ଖୋର୍ଦ୍ଧା କଲେଜର ବି: ଏ: କ୍ଲାସର ଛାତ୍ର, ଅନ୍ୟ ଜଣଙ୍କ ତାଙ୍କ କାକା । କଲେଜ ଛାତ୍ର ଜଣକ ବେଶ୍ ଚାଲାକ୍, ଭଦ୍ର ଏବଂ ପରୋପକାରୀ । ଦୁଇଜଣଯାକ ପୁଲିସଙ୍କୁ ବାଟ ଦେଖାଇ ଷ୍ଟେସନ ପର୍ଯ୍ୟନ୍ତ ନେଇଗଲେ । ଫିଅଟ୍ ଗାଡ଼ି ଷ୍ଟେସନ୍ ପାଖ ପର୍ଯ୍ୟନ୍ତ ବହୁ କଷ୍ଟରେ ଗଲାପରେ, ଗାଡ଼ିକୁ ଖଣ୍ଡେ ଦୂରରେ ରଖି ସମସ୍ତେ ଚାଲି ଚାଲି ବାହାରିଲେ ରେନ୍ତାଙ୍ଗ ଷ୍ଟେସନ ଭିତରକୁ । ଗାଡ଼ିରେ କେବଳ ଏ: ଏସ୍: ଆଇ: ପୁଲିସ ପୋଷାକରେ ଥାଆନ୍ତି । ସିଗ୍‌ନାଲ ପାଇଲେ, ସେ ସଙ୍ଗେ ସଙ୍ଗେ ଆସିବେ ବୋଲି ନିର୍ଦ୍ଦେଶ ଦିଆଯାଇ ଥାଏ ।

ରେନ୍ତାଙ୍ଗ ଷ୍ଟେସନରେ ପହଞ୍ଚିଲା ବେଳକୁ ଏସ୍: ପି: ଦେଖିଲେ ଷ୍ଟେସନ-ମାଷ୍ଟର ଭୟରେ ଷ୍ଟେସନ ରୁମ୍‌କୁ ଭିତରପଟେ ବନ୍ଦ କରି ବସିଥାନ୍ତି । ସାଧା ପୋଷାକରେ ସେମାନଙ୍କୁ ଦେଖିଲା ପରେ, ସେ ଆହୁରି ଭୟଭୀତ ହେଲା ପରି ଜଣାପଡ଼ିଲେ । ମାତ୍ର ଇନସ୍‌ପେକ୍ଟର ମିଶ୍ରଙ୍କୁ ଦେଖିଲା ପରେ ସେ ରୁମ୍‌ରୁ ବାହାରି ତାଙ୍କୁ ତାଙ୍କ ଷ୍ଟେସନ ଆଉ ଲିଙ୍ଗରାଜ ରୋଡ଼ ଷ୍ଟେସନ ମଧ୍ୟରେ ଘଟିଯାଇଥିବା ଡକାୟତି କଥା କହିଲେ । ମିଃ ମିଶ୍ର ତାଙ୍କୁ ସେଇବାଟେ ଦେଇ ଡାକୁମାନେ ପିନ୍ଧିଥିବା ପୋଷାକରେ କେହି ଲୋକ ଅଳ୍ପ ସମୟ ମଧ୍ୟରେ ଯିବାର ଦେଖିଛନ୍ତି ବୋଲି ପଚାରନ୍ତେ, ଷ୍ଟେସନ ମାଷ୍ଟର କହିଲେ ଯେ, ମାତ୍ର ପନ୍ଦର ମିନିଟ ପୂର୍ବରୁ ଦୁଇଜଣ ଯୁବକ—ଜଣେ ଧଳା ସାର୍ଟ, ଫୁଲ୍‌ପ୍ୟାଣ୍ଟ, ଆଉ ଜଣେ ଫୁଲ୍‌ପ୍ୟାଣ୍ଟ ଆଉ ଗୋଟେ କଳା ରଙ୍ଗର ସାର୍ଟ ପିନ୍ଧି ଖୁବ୍ ତରତରରେ ରେଲ୍‌ଲାଇନ କଡ଼ ଦେଇ ଖୋର୍ଦ୍ଧା ରୋଡ଼ ଆଡ଼େ ଯିବାର ସେ ଦେଖିଥିଲେ । ଷ୍ଟେସନ-ମାଷ୍ଟର କହିବା ଅନୁସାରେ, ସେମାନଙ୍କର ପୋଷାକ, ଉଚ୍ଚତା ଇତ୍ୟାଦି ଡାକୁ ଦଳର ଲୋକଙ୍କ ସଙ୍ଗେ ସାମଞ୍ଜସ୍ୟ ଥିବାର ଜଣାଗଲା ।

ମାତ୍ର କଅଣ କରାଯିବ ! ସେମାନେ ଯଦି ଚାଲିଚାଲି ଯାଉଥାନ୍ତି, ତାହେଲେ ପନ୍ଦର ମିନିଟ ମଧ୍ୟରେ ପ୍ରାୟ ୨ କିଲୋମିଟର ଚାଲିଯିବେଣି । ରେଲଲାଇନ କଡ଼େ କଡ଼େ ଗାଡ଼ି ଯାଇ ପାରିବନି । ଚାଲିକରି ଗଲେ,

ସେମାନଙ୍କୁ ଧରିବା କଷ୍ଟକର ହେବ । ଏସ୍: ପି: ସାହେବଙ୍କୁ ଚିନ୍ତିତ ଦେଖି ଷ୍ଟେସନମାଷ୍ଟର କହିଲେ, ସାର୍ ଏବେ ଗୋଟିଏ ମାଲଗାଡ଼ି ଇଞ୍ଜିନ ଅସୁସ୍ଥ ଏବଂ ସେଇ ଇଞ୍ଜିନଟି ଖୋର୍ଦ୍ଧା ରୋଡ଼ ଯିବ; ଆପଣ ଯଦି ଯିବେ, ମୁଁ ତାକୁ ଏଠି ଅଟେକେଇ ଦେବ ଏବଂ ଆପଣଙ୍କୁ ଖୋର୍ଦ୍ଧା-ରୋଡ଼ରେ ଓହ୍ଲାଇ ଦେବା ପାଇଁ କହିଦେବ !" ଇଞ୍ଜିନ୍ ଆସିବା କଥା ଶୁଣି ଏସ: ପି: ଖସି ହୋଇଗଲେ ଏବଂ ସେ ଇଞ୍ଜିନରେ ଗଲେ ରେଲ ରାସ୍ତା କଡ଼ ଦେଇ ଯାଉଥିବା ଲୋକଙ୍କୁ ଦୂରରୁ ଇଞ୍ଜିନ୍ର ଆଲୁଅରେ ଦେଖି ପାରିବେ । ଦୂରରୁ ଦେଖି ଇଞ୍ଜିନ ଡ୍ରାଇଭର ଯଦି ଇଞ୍ଜିନ ଅଟକାଇ ଦିଏ, ତା'ହେଲେ ସେମାନେ ଡାକୁମାନଙ୍କ ପାଖରେ ଓହ୍ଲାଇ ଯାଇ ସେମାନଙ୍କୁ ଅକ୍ତିଆର କରିପାରିବେ ।

ଷ୍ଟେସନ ମାଷ୍ଟରଙ୍କ ସଙ୍ଗେ କଥାବାର୍ତ୍ତା ହେବା ବେଳେ ଇଞ୍ଜିନ୍ ଆସି ରେଢାଙ୍ଗ ଷ୍ଟେସନ୍ରେ ଠିଆ ହେଲା । ଆଗରୁ ଷ୍ଟେସନ-ମାଷ୍ଟର ସିଗ୍ନାଲ ଦେଇ ଅଟେକେଇବାର ବନ୍ଦୋବସ୍ତ କରି ଦେଇଥିଲେ । ମାଲ-ଗାଡ଼ିର ଇଞ୍ଜିନ୍ ରହିଲା ପରେ, ଷ୍ଟେସନ-ମାଷ୍ଟର ଇଞ୍ଜିନ ଡ୍ରାଇଭରଙ୍କୁ ଏସ୍:ପି: କହିଥିବା ମୁତାବକ ନିର୍ଦ୍ଦେଶ ଦେଲେ । ସଙ୍ଗେ ସଙ୍ଗେ ଏସ୍.ପି:, ଏ: ଏମ୍: ଆଇ: ମିଃ ମହାପାତ୍ର ଏବଂ କଲେଜଗୁଣ୍ଡା ତିନିଜଣ ଇଞ୍ଜିନ୍ରେ ବସି ରେଢାଙ୍ଗ ଷ୍ଟେସନ ଛାଡ଼ିଲେ । ଇନସ୍ପେକ୍ଟର ମିଶ୍ର ପେଟ୍ରୋଲିଂ ଗାଡ଼ି ଚଳେଇ ଜଟଣୀ ପୁଲିସ ଷ୍ଟେସନକୁ ଯିବାକୁ ବାହାରିଗଲେ ।

ଖାଲି ମାଲଗାଡ଼ି ଇଞ୍ଜିନ୍ଟି ଆସ୍ତେ ଆସ୍ତେ ଲାଇଟ୍ ଦେଇ ଆଗେଇ ଚାଲିଲା । ଏସ୍: ପି: ସାହେବଙ୍କ ହିସାବ ଅନୁଯାୟୀ ଡାକୁମାନେ ୧୫ ମିନଟ୍ ମଧ୍ୟରେ ଦୁଇ କିଲୋମିଟର ରାସ୍ତା ଅତିକ୍ରମ କରିଥିବେ ଏବଂ ସେମାନଙ୍କ କଥାବାର୍ତ୍ତା ମଧ୍ୟରେ ଆଉ ଗୋଟିଏ କିଲୋମିଟର ଯାଇଥିବେ । ମାତ୍ର ତାଙ୍କ ଇଞ୍ଜିନ୍ ପାଞ୍ଚ କିଲୋମିଟର ଗଲାପରେ ମଧ୍ୟ ଟ୍ରେନ୍ଲାଇନ କଡ଼ରେ କୌଣସି ଲୋକର ସନ୍ଧାନ ମିଳିଲାନି । ଏଇ ସମୟରେ ଖୋର୍ଦ୍ଧା କଲେଜଗୁଣ୍ଡା ଜଣକ କହିଲା, "ସାର୍, ଟ୍ରେନ୍ଲାଇନ୍ କଡ଼ ପାଖରୁ ଗୋଟିଏ ରାସ୍ତା ସଳଖ ଜଟଣୀ ରେଲୱେ କଲୋନୀକୁ ପଡ଼ିଛି । ଡାକୁ

ଦୁଇଜଣ ବୋଧେ ସେଇ ରାସ୍ତାଦେଇ ଟ୍ରେନ୍ ଲାଇନ୍ କଡ଼ ଗୁଡ଼ ଯାଇ-ଥିବେ ।" ତାଙ୍କ କଥା ଅନୁସାରେ ଟ୍ରେନ ଇଞ୍ଜିନକୁ ସେଇଠି ଅଟକେଇ ଏସ୍. ପି:, ମିଃ ମହାପାତ୍ର ଓ ଗ୍ରୁପ ଜଣକ ଓହ୍ଲେଇ ଗଲେ । ଗୁରୁଆଡ଼େ ବୁଦବୁଦକଆ କଣ୍ଟା ବଣ । ଉଞ୍ଚ ହୁଙ୍କା । ମିଃ ମହାପାତ୍ର ତରବରରେ ଗଲାବେଳେ ଗୋଟେ ମସ୍ତବଡ଼ ରଣାସାପ ହାବୁଡ଼େ ପଡ଼ିଲେ । ଜହ୍ନ-ରାତ୍ତି ଥିବା ଯୋଗୁ ରଣାସାପ ହାବୁଡ଼ରୁ ବଞ୍ଚିଗଲେ, ନହେଲେ ତାକୁ ମାଡ଼ ପକେଇଥିଲେ ତାଙ୍କ ଅବସ୍ଥା ଯାହା ହୋଇଥାନ୍ତା ଭଗବାନ ଜାଣନ୍ତି ।

କଲେଜ-ଗ୍ରୁପ ଜଣକ ଲୋକାଲ୍ ପିଲା ହୋଇଥିବା ହେତୁ ସେ ଆଗରେ ବାଟ କଢ଼ାଇ ନେଉଥାଏ । ସେତେବେଳକୁ ରାତ୍ରି ପ୍ରାୟ ଏଟାରଟା ଉପରେ । ଜହ୍ନ ଆସ୍ତେ ଆସ୍ତେ ଆକାଶରୁ ଓହ୍ଲେଇ ଗଲାଣି । ଗୁରୁଟଟେ ନିର୍ଜ୍ଜନ ନିସ୍ତବ୍ଧତା । କେବଳ ତିନିଜଣ ବ୍ୟକ୍ତି ସେଇ ନିର୍ଜ୍ଜନ କଣ୍ଟା-ଝଣ୍ଟାଘେରା ପଡ଼ିଆ ଦେଇ ନିଃଶବ୍ଦରେ ଆଗେଇ ଗ୍ଲୁଲଥାନ୍ତି । ମନରେ ଅସରନ୍ତି ଆଶା, ଉଦ୍‌ବେଗ । କଣ୍ଟାବଣ, ଜଙ୍ଗଲ ବାଟ, ଆଉ ସାପ ବେଙ୍ଗର ଭୟ ତାଙ୍କ ମନକୁ ସ୍ପର୍ଶ କରୁନଥାଏ ।

ଅଳ୍ପ ବାଟ କଣ୍ଟାଝଣ୍ଟା ପଡ଼ିଆ ଦେଇ ଗଲା ପରେ ଗୋଟେ ଗ୍ରେଟିଆ ପାଦଚଲା ରାସ୍ତା ଧଇଲେ । ସେଇ ପାଦ ଚଲା ରାସ୍ତାରେ ସେମାନେ ଟଳେକୁ ଫେରଲେ । ହିସାବ ଅନୁସାରେ ସେମାନେ ବହୁତ ଆଗକୁ ଗ୍ଲୁଲଯାଇ ଥିଲେ । ଗୋଟିଏ ଲାଇନ୍‌ରେ ତିନିଜଣ ସେଇ ଫିକା ଜହ୍ନ ଆଲୁଅରେ ଆଗେଇ ଗ୍ଲୁଲଥାନ୍ତି । ଅଳ୍ପ ବାଟ ଗଲା ପରେ ହଠାତ୍ ଏସ୍. ପି: ସାହେବ ଦେଖିବାକୁ ପାଇଲେ ଖଣ୍ଡେ ଦୂରରୁ ଦୁଇଜଣ ବ୍ୟକ୍ତି ପୂର୍ବବର୍ଣ୍ଣିତ ପୋଷାକ ପରିଚ୍ଛଦରେ ଖୁବ୍ ତରତରରେ ଆଗେଇ ଆସୁ-ଥାନ୍ତି । ସେ, ମିଃ ମହାପାତ୍ର ଆଉ ଗ୍ରୁପ ଜଣଙ୍କୁ ସତର୍କ କରାଇ ଦେଲେ । ତାଙ୍କ ଆଗରେ ସଶସ୍ତ୍ର ଡାକୁ । ସେମାନେ ଆଗେଇ ଆସୁଥାଆନ୍ତି । ଏମାନେ ମଧ୍ୟ ତାଙ୍କ ଆଡ଼କୁ ଗ୍ଲୁଲଥାନ୍ତି । ଅଟକି ଗଲେ ଡାକୁମାନେ ସନ୍ଦେହ କରି ପାରନ୍ତି ।

ପ୍ରଥମ ଡାକୁ ଜଣକ ସେତେବେଳେ ଏସ୍: ପି: ସାହେବଙ୍କୁ କ୍ରସ୍ କରି ଆଗେଇ ଗଲା, ମିଃ ମହାପାତ୍ର ଆଖି ପିଛୁଳାକେ ଡାକୁ ବେକ ପାଖେ ପିସ୍ତଲ ଲଗାଇ ଠିଆ କରିଦେଲେ ଏବଂ ଠିକ୍ ସେଇ ମୁହୂର୍ତ୍ତରେ ଏସ୍: ପି: ସାହେବ, ପଛରେ ଆସୁଥିବା ଡାକୁ ବେକକୁ ଧରି ନେଇଥାନ୍ତି ଆଉ ଡାକୁ ଜାଣିବା ପୂର୍ବରୁ ତା ପଛପଟେ ୮ ଏମ୍: ଏମ୍. ପିସ୍ତଲ ଲଗିଥିବାର ଅନୁଭବ କଲା । ପ୍ରଥମ ଡାକୁ ପକେଟରୁ ଚୋରି ଗହଣା, ଘଣ୍ଟା, ସୁନା ମୁଦ୍ରା ଏବଂ ପଛ ଡାକୁଠାରୁ ଗୋଟେ ଗୁଳିଭର୍ତ୍ତି ଦେଶୀ ପିସ୍ତଲ ବାହାରିଲା । ଏ ସମସ୍ତ ଜିନିଷକୁ ଜବତ କଲା ପରେ, ଡାକୁ ଦୁଇଜଣଙ୍କୁ ଆଗପଛ କରି ଚଲେଇ ଚଲେଇ ଜଟଣୀ ରେଲ୍‌ୱେ କଲୋନୀ ଆଡ଼େ ଏସ୍: ପି: ସାହେବଙ୍କ ଦଳ ବାହାରିଲେ ।

ଏଣେ ମିଃ ମିଶ୍ର ଜଟଣୀ ଥାନାରେ ପହଞ୍ଚି ସେଠାରୁ ଅଫିସର-ମାନଙ୍କୁ ଧରି ଗାଡ଼ିରେ ରେଲ୍‌ୱେ କଲୋନୀ ଦେଇ ସେଇଦଟେ ବାହାରୁ ଥାନ୍ତି । ଏସ୍: ପି: ସାହେବଙ୍କ ଦଳକୁ ଦୂରରୁ ଦେଖି ସେମାନେ ଜିପ୍ ଚଲେଇ ସେଇ ଦିଗକୁ ଆସି ପହଞ୍ଚିଗଲେ । ଦୁଇଜଣ ଡାକୁ ଧରାପଡ଼ି-ଥିବା ଦେଖି ଇନସ୍‌ପେକ୍ଟର ମିଶ୍ର ଖୁବ୍ ଖୁସି ହୋଇଗଲେ । ସଙ୍ଗେ ସଙ୍ଗେ ପେଟ୍ରୋଲିଂ ଗାଡ଼ିରୁ ୱାରଲେସ୍‌ରେ କଣ୍ଟ୍ରୋଲରୁମ୍‌କୁ ଖବର ଦିଆଗଲା ଏବଂ କଣ୍ଟ୍ରୋଲରୁମ୍ ଓ:ସି:ଜ:ଆର:ପି:କୁ ଜଣେଇ ଦେଲା । ଯେଉଁ ଯାତ୍ରୀମାନଙ୍କର ଗହଣା ପତ୍ର ଚୋରି ହୋଇଥିଲା, ସେମାନେ ବାଲେଶ୍ୱର ଠାରେ ପହଞ୍ଚିବା ପୂର୍ବରୁ ଡାକୁ ଦଳର ମେମ୍ବରମାନେ ଧରା ହୋଇ ଗଲେଣି ଖବର ଶୁଣି ଖୁସି ହେଲେ । ସେମାନଙ୍କ ମଧ୍ୟରୁ କେତେ ଜଣ ବାଲେଶ୍ୱରଠାରୁ ପୁଣି ଭୁବନେଶ୍ୱର ଫେରିଲେ ।

ପୁଲିସ୍ କଣ୍ଟ୍ରୋଲରୁମ୍‌ରୁ ଖବର ପାଇ ଭୁବନେଶ୍ୱର ଡି.ଏସ୍. ପି. ମିଃ ଦାସ ଆଉ ଗୋଟେ ଦଳ ପୋଲିସ ଧରି ଜଟଣୀ ଆଡ଼େ ବାହାରି ଆସିଥିଲେ । ଜଟଣୀ ଥାନାରେ ଧରା ହୋଇଥିବା ଡାକୁମାନଙ୍କୁ ଏସ୍.ପି. ପଚାରିବା ପରେ ସେମାନେ କହିଲେ ଯେ, ପ୍ରାୟ ମାସକ ତଳୁ ଏଇ ଦଳର ଲୋକମାନେ ବିହାର ଜିଲ୍ଲାର ଗୁପ୍ତା ଅଞ୍ଚଳରୁ କଲିକତା ଦେଇ

ଜଟଣୀକୁ ଆସିଥିଲେ । ଜଟଣୀରେ ସେମାନଙ୍କ ଜଣାଶୁଣା ଲୋକ ବହୁ ବ୍ୟବସାୟୀ କରେ ଏବଂ ସେ ଲୋକ ଏମାନଙ୍କୁ ରେଲୱେ କଲୋନୀରେ ଘର ଭଡ଼ା ନେଇ ରହିବାର ବନ୍ଦୋବସ୍ତ କରେଇ ଦେଇଥିଲା । ତା'ଛଡ଼ା କଲିକତା ଦେଇ ଅଇଲା ସମୟରେ ସେମାନେ ଗୋଟେ ଅମ୍ବାସାଡ଼ର ଗାଡ଼ି ସଙ୍ଗରେ ଆଣିଥିଲେ । କଲିକତାରୁ ଖୋର୍ଦ୍ଧାରୋଡ଼କୁ ଆସିବା ପରେ ଗୋଟେ ବଡ଼ ଗ୍ୟାସସିଲିଣ୍ଡର କିଣି ବ୍ୟାଙ୍କ୍ ଡକାୟତି କରିବାକୁ ଠିକ୍ କରିଥିଲେ ।

ଜଟଣୀରେ ଥିବା ବ୍ୟବସାୟୀ ଜଣକ ପ୍ରାୟ ୧୫୦୦୦ ଟଙ୍କା ଏମାନଙ୍କ ପାଇଁ ଖର୍ଚ୍ଚ କରିଥିଲେ । ଗାଡ଼ିଭଡ଼ା, ତା'ଛଡ଼ା ସିଲିଣ୍ଡର କିଣା ଓ ଅନ୍ୟାନ୍ୟ ଖର୍ଚ୍ଚ । ଖୋର୍ଦ୍ଧା ରୋଡ଼୍‌ରେ ରହିଥିବା ସମୟରେ ଏଇ ଡାକୁ ଦଳ ଜଟଣୀ ବଜାରରେ ଥିବା ଗୋଟିଏ ବ୍ୟାଙ୍କରେ ଡକାୟତି କରିବା ପାଇଁ ରାତିରେ ପଶିଥିଲେ । ଗ୍ୟାସ୍ ସାହାଯ୍ୟରେ ଏମାନେ ବ୍ୟାଙ୍କର ଲୁହାଦରଜା, ଭିତର କବାଟ କାଟି ଦେଇ ଷ୍ଟ୍ରଙ୍ଗ ରୁମ୍ ପର୍ଯ୍ୟନ୍ତ ଚାଲିଯାଇଥିଲେ । ମାତ୍ର ସେମାନଙ୍କ ଦୁର୍ଭାଗ୍ୟକୁ ଗ୍ୟାସ-କଟର ଷ୍ଟ୍ରଙ୍ଗରୁମ୍‌ର ଲୁହା ଦରଜା କାଟୁଥିବା ବେଳେ ଜଣକ ହାତ ଗ୍ୟାସରେ ପୋଡ଼ିଯିବାରୁ ସେମାନେ ଡକାୟତି କରି ନ ପାରି ଫେରି-ଯାଇଥିଲେ । ତା' ପରେ ପରେ, ଏଇ ଦଳ ଟ୍ରେନ୍‌ରେ ଦୁଇଗୋଟି ଡକାୟତି କରିଥିଲେ । ଡକାୟତି ପାଇଁ ସେମାନେ ଆମ୍ବାସାଡ଼ର ଗାଡ଼ିକୁ ବ୍ୟବହାର କରୁଥିଲେ ।

ଏସ୍.ପି. ସାହେବ ପଚରା ଉଚରା କରି ବୁଝିଲା ପରେ, ସେମାନଙ୍କ ସଙ୍ଗେ ଆଉ ୩ଜଣ ଡାକୁ ଅଛନ୍ତି ଜାଣି ପାରି, ଇନସ୍-ପେକ୍ଟର ମିଃ ମିଶ୍ର ଆଉ ଡି.ଏସ୍.ପି. ମିଃ ଦାସଙ୍କୁ ପୁଣିଥରେ ରେତାଙ୍ଗ ଷ୍ଟେସନ ଠାରୁ ଲିଙ୍ଗରାଜ ରୋଡ଼ ଷ୍ଟେସନ ଆଡ଼େ ଯିବାକୁ କହିଥିଲେ । ତାଙ୍କର ଧାରଣା ହେଲା ଯେ ଯେଉଁ ଡାକୁ ନିଜ ବମ୍ ମାଡ଼ରେ ନିଜେ ଆଘାତ ପାଇଛି; ସେ ନିଶ୍ଚୟ ଆସ୍ତେ ଆସ୍ତେ ଚାଲିକରି ଆସୁଥିବ । ସେଇ ଲାଇନରେ କାମ କଲେ କିଛି ସନ୍ଧାନ ମିଳିପାରେ । ତା'ଛଡ଼ା ଡାକୁ-

ମାନେ ବାହାରୁ ଆସିଥିବା ହେତୁ ସେମାନେ ରେଲ ଲାଇନ କଡ଼ ରାସ୍ତା ଦେଇ ନଷ୍ଟପୁ ଜଂଙ୍କଣି କଲୋନୀକୁ ଫେରିବେ ।

ତାଙ୍କ ନିର୍ଦ୍ଦେଶରେ ଡି:ଏସ୍:ପି: ମିଃ ଦାସଙ୍କ ଦଳ ପୁଣି ଚରିତାଙ୍ଗ ଷ୍ଟେସନରୁ ଲିଙ୍ଗରାଜ ରୋଡ ଦେଇ ଟ୍ରେନ୍ ଲାଇନ୍ କଡ଼େ କଡ଼େ ଚାଲିଲେ । ରାତି ସେତେବେଳକୁ ପ୍ରାୟ ୪ଟା ହେଲାଣି । ପୂର୍ବ ଦିଗ ସଫା ହୋଇ ଆସିଥାଏ । ଡି:ଏସ୍:ପି:ଙ୍କ ଦଳ ଚରିତାଙ୍ଗ ଷ୍ଟେସନର ଆଉଟର ସିଗ୍ନାଲ ଡେଇଁନଥିବେ, ଦେଖିଲେ—ଟ୍ରେନ୍ ଲାଇନ କଡ଼ ଅଳ୍ପ ତୋଟାରେ ତିନିଜଣ ଲୋକ ବସିଛନ୍ତି । ସେ ସଙ୍ଗେ ସଙ୍ଗେ ଲୁଚି-ଛପି ତାଙ୍କ ଆଡ଼େ ଯାଇ ସାମ୍ନାସାମ୍ନି ହେଲେ । ଡାକୁ ଦଳର ଲିଡ଼ର (ସର୍ଦ୍ଦାର) ତା' ପକେଟରୁ ପିସ୍ତଲ କାଢ଼ି ପୁଲିସ ଦଳ ଆଡ଼େ ଲକ୍ଷ୍ୟ କରିବା ପୂର୍ବରୁ ଜଣେ ପୁଲିସ କନେଷ୍ଟବଲ ଡେଇଁ ପଡ଼ି ଡାକୁ ହାତକୁ କାବୁ କରି ନେଇଥିଲେ ।

ପାଞ୍ଚ ମିନିଟ୍ ଧସ୍ତାଧସ୍ତି ପରେ ତିନିଜଣ ଯାକ ଡାକୁ ଧରା-ପଡ଼ିଲେ ।

ଡାକୁ ଦଳର ପ୍ରତ୍ୟେକ ମେମ୍ବର ପୁଲିସ ଦ୍ୱାରା ଗିରଫ ହେଲେ ଏବଂ ଯାତ୍ରୀମାନଙ୍କ ଠାରୁ ଲୁଟି ନେଇଥିବା ସମ୍ପତ୍ତି ଜବତ ହେଲା । ଏହି ଡାକୁ ଦଳକୁ ଗିରଫ କଲା ପରେ ସଶସ୍ତ୍ର ଟ୍ରେନ୍ ଡକାୟତି ପ୍ରାୟ କମି ଯାଇଥିଲା ।

## ରେପ୍, ଅବଶ୍ୱାସ ଓ ମର୍ଡର



ଭୟ ଆଶଙ୍କାରେ କାହାର ମୁହଁରେ କଥା ନଥାଏ । ଶୁକ୍ରାମୁଣ୍ଡା, ମାରକସ୍, ପିଟର ମୁଣ୍ଡା ନିଜ ନିଜର ଘର ପଛପଟ ବାଡ଼ ଦାଢ଼ରେ ଜଳୁଜଳୁ ହୋଇ ବସ୍ତିମୁଣ୍ଡ ପାଖ ନାଣ୍ଡିଆ ମୁଣ୍ଡିଆ ଆଡ଼େ ଚାହିଁ ରହିଥାନ୍ତି । ରାତି ପାହି ଦିନ ଘଡ଼ିଏ ହେଲାଣି । କୋଇଲ ନଦୀ ଆରପଟ ପାହାଡ଼ ଉପର ଦେଇ ସୂର୍ଯ୍ୟକିରଣ ଗ୍ଲେଟ ନାଣ୍ଡିଆ ପାହାଡ଼ ଉପରେ ଖେଳେଇ ହୋଇଯାଇଥାଏ । ସକାଳୁ ସକାଳୁ ଶୁକ୍ରା, ମାର୍କସ ସବୁଦିନ ପରି ପାହାଡ଼ ତଳ ବିଲ ଖଣ୍ଡକୁ ସକାଳୁଆ ନିତ୍ୟକର୍ମ ସାରିବାକୁ ଯାଇ ବାଟରେ ଯାହା ଦେଖିଲେ, ଭୟରେ ତାଙ୍କ ଦେହ ଶୀତେଇ ଉଠିଲା । ଜାନୁଆରୀ ମାସ ଶୀତ ସକାଳ ତାଙ୍କ ଦେହକୁ ଯେତେ ଥରାଇ ଦେଇ-ନଥିଲା, ପାହାଡ଼ ତଳ ଭୟଙ୍କର ଦୃଶ୍ୟ ଦେଖି ସେମାନେ ଭୟରେ ଥରି ଉଠିଥିଲେ । ସକାଳ ନିତ୍ୟକର୍ମ ପାଇଁ କୋଇଲ ନଈକୂଳକୁ ନଯାଇ ଫେରି ଆସିଥିଲେ ନିଜ ଘରଆଡ଼କୁ ।

ଶୁକ୍ରାମୁଣ୍ଡାର ବସ୍ତି ରାଉରକେଲା ଇସ୍ପାତ ନଗରୀର ଉତ୍ତାଜାହାଜ ପଡ଼ିଆ ପାଖ ମୁଣ୍ଡିଆ ତଳେ । ଅଳ୍ପ ଦୂରରେ ରିଂରୋଡ଼ ହିଲ ପାଖଦେଇ ଉଦିତ୍ ନଗର ଆଡ଼େ ମାଡ଼ିଯାଇଛି । ଉଦିତ୍ ନଗର ପାରହେଲେ ଇସ୍ପାତ୍ କାରଖାନାର ସ୍ୱରାଟ ପାଚେରୀ, ପାଚେରୀ ପରେ କାରଖାନା । ଛେଣ୍ଡ୍ ପାହାଡ଼ ଖଣ୍ଡେ ଦୂରରେ । ପୂର୍ବପଟେ ଅଳ୍ପ ଦୂରରେ କୋଇଲ ନଈ ବହିଯାଇଛି । ଶୁକ୍ରାର ବସ୍ତିଠାରୁ ପ୍ରାୟ ଅଧମାଇଲଏ ଦୂର ପରେ

ସେକ୍ଟର ଆଠ, ଚଉଦ, ଷୋହଳ, ତାପରେ ଆମ୍ବବାଗାନ୍ ଛକ । କୋଡ଼ିଏ ନମ୍ବର ସେକ୍ଟର ମାର୍କେଟ । ଶୁକ୍ରା ମୁଣ୍ଡାର ବାପ ଅଜାଙ୍କ ବସ୍ତି ଥିଲା ଏଇ କୋଇଲି ନଦୀ ପାଖ ମୁଣ୍ଡିଆ ତଳେ । ରାଉରକେଲା ସହର ହେଲାପରେ ତାଙ୍କ ବସ୍ତିକୁ ସରକାର ସହର ପାଇଁ ନେଇଗଲେ । ବସ୍ତିଲୋକମାନେ ଗାଁଗଣ୍ଡା ଛାଡ଼ି କୋଇଲି ନଈ ପାରିହୋଇ ଆରପଟ ଡଅଁସ ଉପରେ ବସ୍ତି ବନେଇ ରହିଲେ । ଶୁକ୍ରାର ବାପ ସରକାରଙ୍କ ଠାରୁ କ୍ଷତିପୂରଣ ନେଇଯାଇଥିଲେ ମଧ୍ୟ ବସ୍ତିର ପୁରୁଣା ଘର ଛାଡ଼ି ନଥିଲା । ଯେତେବେଳେ କମ୍ପାନୀ ଘର କରିବ ସେତେବେଳେ ଛାଡ଼ିବ । ଏପର୍ଯ୍ୟନ୍ତ କମ୍ପାନୀ ତାଙ୍କ ବସ୍ତି ଅଞ୍ଚଳରେ ସେକ୍ଟର ବନେଇବା ପାଇଁ କାମ ଆରମ୍ଭ କରିନି । ଏଇ କେତେବର୍ଷ ଭିତରେ ତା' ବାପ ମରି ସେ ବି ଅଧା ବୟସର ମଣିଷ ହେଲେଣି ।

ଏତେଦିନ ଏଇ ବସ୍ତିରେ ଘର କରି ରହିଥିଲେ ବି ଏମିତି ଅଘଟଣ କଥା ସେ କେବେହେଲେ ଦେଖି ନଥିଲା । ରାତିରେ ରିଙ୍ଗ୍‌ରୋଡ୍ ଉପରେ ଡକାୟତି ହବାର ଶୁଣିଛି । ଲୋକମାନଙ୍କ ବେକପାଖେ ଛୁରୀ ଲଗେଇ ହାତରୁ ଘଣ୍ଟା, ପକେଟରୁ ପଇସା ମାରିନେବାର ଦୃଶ୍ୟ ସେ କେତେଥର ଦେଖିଛି । ମାତ୍ର ତାଙ୍କ ବସ୍ତି ପାଖାପାଖି ମର୍ଡ଼ର ହେବା ଘଟଣା ତା' ପିଲାଦିନରୁ ସେ କେବେହେଲେ ଦେଖି ନଥିଲା କି ଶୁଣି ନଥିଲା ।

ସେଦିନ ସକାଳୁ ସେମାନେ ମୁଣ୍ଡିଆ ତଳ ଦେଇ କୋଇଲି ନଦୀକୁ ଯିବା ବାଟରେ ଦେଖିଲେ ଗୋଟିଏ ସୁନ୍ଦରୀ ଯୁବତୀର 'ଶବ' । ବୟସ ପଚିଶ କି ଛବିଶ । ଦେହରେ ବରହମ୍‌ପୁରୀ ପାଟ । ହାତ, ବେକ, କାନରେ ସୁନା ଅଳଙ୍କାର । ମୁଣ୍ଡର ସିନ୍ଦୂର ଟୋପା ସକାଳ୍ର ସୂର୍ଯ୍ୟ କିରଣରେ ଦାଉ ଦାଉ ହୋଇ ଜଳୁଥାଏ । ମୃତା ଯୁବତୀ ମୁହଁରେ ଟିକିଏ ହସ ରହିଥିଲା । ସତେ ଯେମିତି ମୃତ୍ୟୁ ତାଙ୍କୁ ଛୁଇଁନଥିଲା । ଶୁକ୍ରା ପ୍ରଥମେ ବିଶ୍ୱାସ କରିପାରି ନଥିଲା ଯେ ଯୁବତୀ ଜଣକ ମୃତା

ବୋଲି । ମାତ୍ର ପାଖକୁ ଯାଇ ଭଲଭାବରେ ଦେଖିଲା ପରେ ଜାଣିପାରିଲା ଯୁବତୀଜଣଙ୍କୁ କିଏ ତଣ୍ଟିଚିପି ହତ୍ୟା କରିଛି ।

ସନ୍ଦେହ, ଭୟ ଆଉ ଆଶଙ୍କାରେ ସେମାନେ କୋଇଲି ନଈକୁ ନଯାଇ ଫେରିଆସିଲେ । ନିଜ ନିଜ ଘର ପାଖେ ସେମାନେ ସେଇ ମୁଣ୍ଡିଆ ତଳେ ଶବ ପଡ଼ିଥିବା ପଡ଼ିଆ ଆଡ଼େ ଚାହିଁଥାନ୍ତି । ଭୟରେ ସେମାନେ ଏ ଘଟଣା କାହା ଆଗେ କହିବାକୁ ଯାଇନଥିଲେ । ବସ୍ତିର ବଦ୍‌ନାମ ହେବ ପୁଣି ପୁଲିସ ଆସି ତାଙ୍କୁ ଆଗ ଥାନାକୁ ଟାଣିବ । ପ୍ରାୟ ଦିନ ୮.୧୫ ମିନିଟ୍ ବେଳକୁ ଜଣେ ତିରିଶ ବର୍ଷ ବୟସର ଯୁବକ ସାଇକେଲ୍ ଚଢ଼ି ସେଇ ଶବ ପଡ଼ିଥିବା ଜାଗାଆଡ଼କୁ ଯାଇଥିଲା । ଯୁବତୀର ଶବଠାରୁ ଅଳ୍ପ ଦୂରରେ ଠିଆ ହୋଇ କିଛି ସମୟ ମାଳି ଯୁବକ ଜଣକ ଅପଲକ ନୟନରେ ଚିତ୍ତ ହୋଇ ପଡ଼ିଥିବା ଶବଆଡ଼େ ଚାହିଁ ରହିଥିଲା । ଯୁବକ ଜଣକ ଏପରି ଭାବରେ ଯୁବତୀର ଶବଆଡେ ଚାହିଁ ରହିଥିଲା ଯେ, ତା'ର ପଛପଟେ କଅଣ ଘଟୁଛି ସେଥିପ୍ରତି ଆଦୌ ସଚେତନ ନଥିଲା । ଶୁକ୍ରା, ମାର୍କସ, ପିଟର, ତାଙ୍କ ବାଡ଼ପାଖରୁ ଯୁବକ-ଜଣକୁ ଶବ ପାଖରେ ଦେଖି ଆସ୍ତେ ଆସ୍ତେ ତା'ଆଡ଼େ ଚାଲି ଚାଲି ଯାଇଥିଲେ । ତାଙ୍କର ସନ୍ଦେହ ହେଲା, ଯୁବତୀ ଜଣଙ୍କର ମୃତ୍ୟୁ ବିଷୟରେ ଯୁବକ ଜଣକେ ନିଶ୍ଚୟ କିଛି ଜାଣେ । ନହେଲେ ସେ କପରି ମୁଣ୍ଡିଆ ତଳି ନିକାଞ୍ଚନ ସ୍ଥାନକୁ ସିଧା ସାଇକେଲରେ ବସି ଆସିଥାନ୍ତା ! ସେମାନେ ତିନିଜଣ, ଯୁବକ ଜଣକ ପାଖାପାଖି ହେଲାବେଳକୁ ହଠାତ୍ ଯୁବକ ସେମାନଙ୍କ ଆଗମନକୁ ଜାଣିପାରି, ଧରିଥିବା ସାଇକେଲ୍‌କୁ ଫୋପାଡ଼ି ଦେଇ ମୁଣ୍ଡିଆ ଆଡ଼େ ଦଉଡ଼ିବାକୁ ଲାଗିଲା ।

ଶୁକ୍ରାମୁଣ୍ଡା, ମାର୍କସ ଆଉ ପିଟରଙ୍କ ଆଗରେ ସେ ବା କେତେ ଦଉଡ଼ନ୍ତା ! ଠେଲୁଆକୁ ବଲୁଆ ମାଡ଼ ବସିଲା ପରି, ତିନିଜଣଯାକ ଯୁବକଜଣକୁ ମାଡ଼ିବସିଲେ । ସେମାନଙ୍କୁ ଦେଖି ପ୍ରଥମେ ଯୁବକ ଭୟରେ ଥରି ଉଠିଥିଲା । ପରେ ପରେ ସେ ସେମାନଙ୍କ ଆଗରେ କହିଥିଲା ଯେ ମୃତା ଯୁବତୀ ଜଣକ ତା'ର 'ସ୍ତ୍ରୀ' । ତାକୁ ଜଣେ ଯୁବକ ଗତ ରାତିରେ

ଜବରଦସ୍ତ ଘରୁ ଟେକିନେଇ ପାଶବିକ ଅତ୍ୟାଚାର କଲାପରେ ହତ୍ୟାକରି ଏଠାରେ ଫୋପାଡ଼ି ଦେଇଯାଇଛି । ତା'ର ଶଙ୍କାକୁଳ ହାବଭାବ, ଥଙ୍ଗ ଥଙ୍ଗ କଥାବାର୍ତ୍ତାରୁ ସେମାନେ ସନ୍ଦେହ କଲେ ଯେ ଯୁବକଜଣକ ସତ କହୁନଥିଲା ।

ବସ୍ତିକୁ ସମସ୍ତଙ୍କ ଆଗରୁ ବଦ୍‌ନାମରୁ ରକ୍ଷା କରିବା ପାଇଁ ସେମାନେ ଯୁବକ ଜଣକୁ ଧରି ରଘୁନାଥପାଲ୍ଲୀ ଥାନାଆଡ଼େ ଚାଲିଲେ । ଥାନାରେ ପହଞ୍ଚି ଥାନା ଇନସ୍‌ପେକ୍ଟରଙ୍କ ଆଗେ ସମସ୍ତ ଘଟଣା କହିଲେ । ସଙ୍ଗେ ସଙ୍ଗେ ରଘୁନାଥପାଲ୍ଲୀ ଇନସ୍‌ପେକ୍ଟର ଫୋର୍ସ ଧରି ଯୁବତୀ ପଡ଼ିଥିବା ଘଟଣାସ୍ଥଳକୁ ଜିପ୍‌ରେ ଆସିଥିଲେ । ସଙ୍ଗରେ ମଧ୍ୟ ଯୁବକ ଜଣକ ଥିଲେ । ପୋଲିସ୍ ସଙ୍ଗରେ ଯେତେବେଳେ ମୃତା ଯୁବତୀର ଶବ ପାଖେ ଯୁବକଜଣଙ୍କ ପହଞ୍ଚିଲେ, ନିଜ ମନ ଭିତରର କୋହ ସମ୍ଭାଳି ନପାରି କଇଁ କଇଁ ହୋଇ କାନ୍ଦିଉଠିଲା । ତା'ର କାନ୍ଦ ଆସ୍ତେ ଆସ୍ତେ ବଢ଼ିବାରେ ଲାଗିଲା ଏବଂ ସେ ପୋଲିସ୍ ଆଗରେ ସତକଥା କହିବାକୁ ଆଗେଇ ଆସିଥିଲା । ପୁଲିସ୍ ଆଗରେ ବୟାନ୍ କରି ଯୁବକଜଣକ କହିଥିଲା ଯେ, ତାଙ୍କ ଘର ଗଞ୍ଜାମ ଜିଲ୍ଲାର ସୋରଡ଼ା ଅଞ୍ଚଳର ଗୋଟିଏ ପଲ୍ଲୀ ଗାଁରେ । ଗାଁ ସ୍କୁଲରୁ ମାଟ୍ରିକ୍ ପାଶ୍ କଲାପରେ ଚାକିରି କରିବା ପାଇଁ ସେ ଆସିଥିଲା ଇସ୍ପାତ ନଗରୀ ରାଉରକେଲାକୁ । ଆଗରୁ ତାଙ୍କର ମାମୁଁ ପ୍ଲାଣ୍ଟ୍‌ରେ କାମ କରୁଥିଲେ । ତା' ଛଡ଼ା ଗଞ୍ଜାମ ଅଞ୍ଚଳରୁ ବହୁ ଲୋକ ଇସ୍ପାତ କାରଖାନାରେ କାମ କରନ୍ତି । ତା'ର ଚାକିରି ଆରମ୍ଭ ହୁଏ ପ୍ରାୟ ବାରବର୍ଷ ତଳେ । ଖଲାସି ଭାବେ ଚାକିରି ଆରମ୍ଭ କରନ୍ତି ମାମୁଁଙ୍କ ସୁପାରିଶରେ । ବାରବର୍ଷ ମଧ୍ୟରେ, ଗିରିଧାରୀ (ତାର ନାମ) ଖଲାସୀରୁ ପ୍ରମୋସନ ପାଇ ଟାଇମ୍‌କିପର ହୋଇଥିଲା । ସମସ୍ତେ ତାକୁ ଭଲପାଆନ୍ତି । କାମରେ କେବେହେଲେ ହେଳା ପ୍ରଦର୍ଶନ କରିନଥିଲା ଗିରିଧାରୀ ।

ଚାକିରି କଲାପରେ ସେ ତାଙ୍କ ଗାଁ ପାଖେ ବିବାହ କରିଥିଲା ପୁଷ୍ପାକୁ । ବାପ, ମା' ଏଇ ବିଭାଘର ଯୋଗାଡ଼ କରିଥିଲେ । ପୁଷ୍ପା ଥିଲା

ଝୁବ୍ ସୁନ୍ଦରୀ ବୁଦ୍ଧିମତୀ ମେଳାପୀ ଝିଅ । ବାହାଘର ପରେ ଗିରିଧାରୀ ପୁଷ୍ପାକୁ ଧରି ଗାଉଁରକେଲା ସହରକୁ ଆସିଲା । ଘରଭଡ଼ା ନେଇ ଦୁହେଁ ଜଣ ଆଠ ନମ୍ବର ସେକ୍ଟରରେ ରହିଲେ । ପାଖପଡ଼ୋଶୀ ସମସ୍ତେ ପୁଷ୍ପାକୁ ଭଲପାଆନ୍ତି । ମେଳାପୀ ଝିଅ । ହସଖୁସିରେ ଦିନ କଟିଯାଏ । କିଛିଦିନ ପରେ ସେମାନେ ପୁଅ ଝିଅର ବାପ ମା' ହେଲେ । ତାଙ୍କ ସୁଖମୟ ପାରିବାରିକ ଜୀବନ ସାହି ପଡ଼ିଶାରେ ଚର୍ଚ୍ଚାର ବିଷୟ ହୋଇଥିଲା ।

କିନ୍ତୁ ସୁଖ ସବୁବେଳେ ରୁହେନି । ଗିରିଧାରୀର ପାରିବାରିକ ଜୀବନରେ କଳାହାଣ୍ଡିଆ ମେଘରୂପେ ଦେଖାଦେଲା କାଳିଆ । କାଳିଆ, ଗଞ୍ଜାମ ଜିଲ୍ଲାର ଲୋକ । ତା' ବାପ ମାଳି ହିସାବରେ କାମ କରେ ପ୍ଲାଣ୍ଟରେ । ପିଲ୍‌ଦିନୁ କାଳିଆ ପାଠରେ ମନ ନଦେଇ ଶାଠରେ ମନ-ଦେଲା । ଅସାମାଜିକ କାର୍ଯ୍ୟରେ କାଳିଆ ନାଁ ସବୁଆଡ଼େ ଶୁଣାଗଲା । ଛୁରୀ ଧରି ଗୋଟେ ସେକ୍ଟରରୁ ଆଉ ଗୋଟେ ସେକ୍ଟରକୁ କାଳିଆ ବୁଲିଯାଏ ତା'ର ବନ୍ଧୁମାନଙ୍କ ସଙ୍ଗେ ।

କିଛିଦିନ ମଧ୍ୟରେ ପୁଲିସ ଆଖିରେ କାଳିଆର କାର୍ଯ୍ୟକଳାପ ଧରାପଡ଼ିଲା । କାଳିଆକୁ ଆରେଷ୍ଟକରି ପୁଲିସ ହାଜତରେ ରଖିଲେ । କାଳିଆର ବୁଢ଼ା ବାପ, ଯଦିଓ ପୁଅର ଗୁଣଗ୍ରାମକୁ ଘୃଣାକରେ, ମାତ୍ର ବାପ ହିସାବରେ ପୁଅକୁ ପୁଲିସ ହାଜତରୁ ମୁକୁଳାଇବା ପାଇଁ ଗିରି-ଧାରୀର ସାହାଯ୍ୟ ଲୋଡ଼ିଥିଲା । ପାଖ ଗାଁ ଲୋକ ଗିରିଧାରୀ । ବିଦେଶରେ ଘର କରିଥିଲେ ଜଣେ ଜଣକୁ ସାହାଯ୍ୟ କରିବା କର୍ତ୍ତବ୍ୟ ମନେକରି, ଥାନାକୁ ଯାଇ କାଳିଆକୁ ଜାମିନ୍ ହୋଇ ମୁକୁଳାଇ ଆଣିଲା । ପୁଲିସ୍ ହାଜତରୁ ଫେରିଲା ପରେ କାଳିଆ, ଗିରିଧାରୀ ଘରକୁ ଯିବାଆସିବା କଲା । ଗିରିଧାରୀ, ପୁଷ୍ପା, କାଳିଆକୁ ସାନଭାଇ ହିସାବରେ ଦେଖୁଥିଲେ । ପୁଷ୍ପା ତାକୁ ସ୍ନେହ କରେ । ଭଲ ମଣିଷ ହେବାକୁ ଉପଦେଶ ଦିଏ । ଭଲମନ୍ଦରେ କାଳିଆ ତାଙ୍କ ଘରେ ଖିଆପିଆ କରେ ।

କିଛିଦିନ ଗଲା ପରେ ଦିନେ ଗିରିଧାରୀ ଅଫିସ୍‌ରୁ ଫେରିଲା

ବେଳକୁ ଦେଖିଲି ବାଣ୍ଡି ଦୁଆର ମୁହଁ କବାଟ ପାଖେ ପୁଷ୍ପା ଠିଆ ହୋଇ-
ଥାଏ । ହାତରେ ଛୁଆ ଧଇଁଠା କାନ୍ଦୁଥାନ୍ତି । ପୁଷ୍ପା କାନ୍ଦି କାନ୍ଦି ତା'
ଆଖି ଫୁଲି ଯାଇଥାଏ । ଗିରିଧାରୀକୁ ଦେଖି ପୁଷ୍ପା କାନ୍ଦି କାନ୍ଦି କହିଥିଲି
ଯେ, ସେ ପୁଲିଶ୍‌କୁ ଗଲା ପରେ କାଳିଆ ତାଙ୍କ ଘରେ ପଶି ଛୁରି ଦେଖାଇ
ତା' ଉପରେ ପାଶବିକ ଅତ୍ୟାଚାର କଲା । ପ୍ରଥମେ ଗିରିଧାରୀ ବିଶ୍ୱାସ
କରିପାରି ନ ଥିଲି ଯେ, ଯେଉଁ ଲୋକକୁ ସେ ହାଜତରୁ ମୁକୁଳାଇ ଆଣି
ଘରେ ନିଜ ସାନ ଭାଇ ପରି ସ୍ଥାନ ଦେଇଥିଲି, ସେଇ ଲୋକ ତା' ସ୍ତ୍ରୀ
ପ୍ରତି ଏପରି ଅନ୍ୟାୟ କାର୍ଯ୍ୟ କରିବ ; ଦ୍ୱନ୍ଦ୍ୱ ଆଉ ସନ୍ଦେହ ତା' ମନକୁ
ଘାଣ୍ଟିବାରେ ଲାଗିଲି । ସ୍ତ୍ରୀ ଠାରୁ ଏ କଥା ଶୁଣିଲି ପରେ ଦୁହେଁ ମନ-
ଦୁଃଖ କଲେ ମାତ୍ର କାଳିଆ ଭୟରେ ପୁଲିସରେ ଖବର ଦେଇ ନ ଥିଲେ ।
ପାଶବିକ ଅତ୍ୟାଚାର କଲା ପରେ କାଳିଆ ଧମକ୍ ଦେଇ କହିଥିଲା ଯେ,
ଯଦି ସେ କାହାକୁ କି ପୁଲିସ୍‌କୁ ଏ ବିଷୟରେ ଖବର ଦିଅନ୍ତି ତାହେଲେ
ତାଙ୍କ ଛୁଆଙ୍କୁ ସେ ହତ୍ୟା କରିବ । ପିଲାଙ୍କୁ ଆଖି ଆଗରେ ଦେଖି
ଗିରିଧାରୀ ପୁଲିସ୍‌ରେ ଖବର ଦେଇ ନ ଥିଲା ।

ମାତ୍ର ସନ୍ଦେହ ଆଉ ଦ୍ୱନ୍ଦ୍ୱ ତା' ମନରୁ ଦୂର ହୋଇ ଯାଇ-
ନଥିଲା । ଏ ଘଟଣା ଘଟିଲା ପରେ ସାଇପଡ଼ିଶାର ଟୁପୁର ଟାପର କଥା,
ତା' ମନରେ ସନ୍ଦେହର ଜାଲ ସୃଷ୍ଟି କଲା । ଆସ୍ତେ ଆସ୍ତେ ସେ ପୁଷ୍ପାକୁ
ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିଲା । ସୁଖୀ ପରିବାର ଭିତରେ
ସନ୍ଦେହ, ଅବିଶ୍ୱାସ ପ୍ରବେଶ କରେ । କିଛିଦିନ ପରେ ପୁଷ୍ପା ପିଲାମାନଙ୍କୁ
ଧରି ତା' ବାପଘରକୁ ପଳାଇଗଲା । ଗାଁରେ ସମସ୍ତେ ଏ ଘଟଣା
ଜାଣିଲେ । ଦୁଇ ପରିବାରରେ ବିଚାର କରି ଶେଷରେ ଗିରିଧାରୀକୁ
ଡକାଇ ଥିଲେ । ବାପ, ମା, ଶାଶୂ, ଶ୍ୱଶୁର କଥାକୁ ବିଚାର କରି ପୁଷ୍ପାର
କିଛି ଦୋଷ ନାହିଁ ବୋଲି କହି ଗିରିଧାରୀ ସଙ୍ଗରେ ପୁଣି ପୁଷ୍ପାକୁ ସାଉର-
କେଲା ପଠାଇ ଦେଲେ । ବାଟରେ ଅଇଲା ବେଳେ ସେମାନେ ଠାକୁର
ମନ୍ଦିର ଦର୍ଶନ କରିଥିଲେ ଏବଂ ପୁଷ୍ପା, ଗିରିଧାରୀ ପ୍ରତି କେବେ ଅନ୍ୟାୟ
କରିନି ବୋଲି ଠାକୁରଙ୍କ ଆଗରେ ଶପଥ କରି କହିଥିଲା । ଠାକୁରଙ୍କ

ଆଗରେ ଶପଥ କଲା ପରେ ପୁଷ୍ପା ପ୍ରତି ଗିରିଧାରୀର ସନ୍ଦେହ ଅନେକାଂଶରେ ଦୂର ହୋଇ ଥାଏ ।

ଏଥରକ ରାଉରକେଲା ଫେରିଲା ପରେ, ସେମାନେ ତାଙ୍କ ଭଡ଼ା ଘର ବଦଳାଇ ଅନ୍ୟ ଜାଗାରେ ଭଡ଼ା ନେଇ ରହିଲେ । ପୁଣି ସ୍ୱାମୀ ସ୍ତ୍ରୀ ଭିତରେ ଆନ୍ତରିକତା ଫେରି ଆସିଲା । ମାତ୍ର କାଳିଆ ଏମାନଙ୍କ ଉପରେ ନଜର ରଖିଥାଏ । ସେ ଖବର ସଂଗ୍ରହ କରି ନେଲା ଯେ ପୁଷ୍ପା ପୁଣି ଫେରି ଆସିଛି ଏବଂ ସେ ଘର ବଦଳେଇ ଅନ୍ୟ ସ୍ଥାନରେ ରହୁଛନ୍ତି । ଖବର ନେଇ କାଳିଆ ପୁଣି ଆସି ଗିରିଧାରୀ ନ ଥିବା ସମୟରେ ତା' ଘର ଆଗରେ ସାଇକେଲ୍ ବେଲ୍ ଦିଏ । ବାହାରେ କାଳିଆକୁ ଦେଖି ପୁଷ୍ପା ଘର ବନ୍ଦ କରିଦିଏ, ମାତ୍ର ପ୍ରତ୍ୟେକ ଦିନ କାଳିଆ, ପୁଷ୍ପା ଘରବାଟ ଦେଇ ଯିବାକୁ ଭୁଲି ନ ଥାଏ । କାଳିଆର ହାବଭାବ କଥା ପୁଷ୍ପା ଗିରିଧାରୀ ଆଗରେ ପ୍ରକାଶ କଲା । ଗିରିଧାରୀ କାଳିଆକୁ ଏ ବିଷୟରେ ପଚାରିବା ପରିବର୍ତ୍ତେ ପୁଷ୍ପାକୁ ସନ୍ଦେହ କରିବାରେ ଲାଗିଲା । ସନ୍ଦେହୀ ମନ ସନ୍ଦେହ ଜାଲରେ ଛନ୍ଦି ହୋଇ ଉଠିଲା ।

ସେହିଦିନ ଥାଏ ଜାନୁଆରୀ ମାସ ପନ୍ଦର ତାରିଖ । ସକାଳୁ ଗିରିଧାରୀ ସବୁଦିନ ପରି ପ୍ଲାଣ୍ଟକୁ ଚାଲିଯାଏ । ଘରେ ଥାନ୍ତି ଛୋଟ ପିଲା ଆଉ ପୁଷ୍ପା । ଦିନ ପ୍ରାୟ ଚାରିଟାବେଳକୁ କାଳିଆ ସାଇକେଲ ଧରି ଗିରିଧାରୀ ଭଡ଼ାଘର ସାମ୍ନାରେ ଠିଆ ହେଲା । ସାଇକେଲରୁ ଓହ୍ଲାଇ ହାଣ୍ଡି କବାଟ ବାଡ଼େଇ ପୁଷ୍ପାକୁ ଡାକିଲା, ମାତ୍ର ଘର କବାଟ ଭିତର ପଟରୁ ବନ୍ଦକରି ପୁଷ୍ପା ତା' କଥାର କିଛି ଜବାବ୍ ଦେଇ ନ ଥିଲା । କିଛି ସମୟ କବାଟ ବାଡ଼େଇଲା ପରେ କାଳିଆ କହିଥିଲା ଯେ, ସେ ସେଦିନ "ରାତିରେ ଆସିବ, ଦେଖିବ କିଏ ପୁଷ୍ପାକୁ ତା' କବଳରୁ ରକ୍ଷା କରିବ । ପ୍ଲାଣ୍ଟରୁ ଫେରିଲା ପରେ, ପୁଷ୍ପା କାନ୍ଦି କାନ୍ଦି ଗିରିଧାରୀ ଆଗରେ କାଳିଆ ଦେଇଯାଇଥିବା ଧମକ କଥା କହିଲା । ମାତ୍ର ଗିରିଧାରୀ ତା' କଥାକୁ ଅନ୍ୟ ଢଙ୍ଗରେ ଭାବିନେଲା । ସେଦିନ ରାତିରେ ସେମାନେ ସେଇ ଘରଛାଡ଼ି ଜିନିଷପତ୍ର ଧରି ତାଙ୍କ ମାମୁଁ ଘରକୁ ଚାଲିଯାଇଥିଲେ । ମାମୁଁ ଘରେ

ନଥାନ୍ତି । ତାଙ୍କର ବର୍ଦ୍ଦି ଉଉଚ୍ଚି ଥିବା ଯୋଗୁ ସେ ଫ୍ଲାଣ୍ଟରେ ଥାନ୍ତି । ଘରେ ପୁଷ୍ପା, ଗିରଧାରୀ ଆଉ ଛୁଆ ହଓଚ୍ଚି ।

ଆସ୍ତେ ଆସ୍ତେ ରାତି ଆଗେଇ ଚାଲେ । ଗ୍ରୋଟ ପିଲା ହଓଚ୍ଚି କଅଣ ଗପ୍ପ ଖାଇ ଦେଇ ଶୋଇପଡ଼ନ୍ତି । ସେମାନେ ଶୋଇ ପଡ଼ିଲା ପରେ ସ୍ୱାମୀ-ସ୍ତ୍ରୀ ହାଣ୍ଡି ବାରଣ୍ଡାରେ ବସି ହିସାବ କଲେ ।

ଗିରଧାରୀର ସେଇ ସନ୍ଦେହ···ମନରେ ଦ୍ୱନ୍ଦ୍ୱ । ପୁଷ୍ପା ଯେତେ ପ୍ରକାର କହିଲେ ବି ଗିରଧାରୀ ପ୍ରସ୍ତୁତ ନଥିଲା ତା' କଥାକୁ ବିଶ୍ୱାସ କରିବାକୁ । ସେ ଭାବୁଥିଲା ପୁଷ୍ପାର କାଳିଆ ସଙ୍ଗେ କିଛି କୁସମ୍ପର୍କ ଅଛି । ସେଇଥିଲାଗି ସେ ନଥିବା ସମୟରେ କାଳିଆ ପୁଷ୍ପା ପାଖକୁ ଆସେ ।

ପୁଷ୍ପା କେବଳ ତା' ମନ ବୁଝେଇବା ପାଇଁ ଏସବୁ କଥା କହୁଛି । ତା'ର ସନ୍ଦେହ କାଳିଆ ତା' ଠାରୁ ବୟସରେ କମ୍ । ଦେଖି-ବାକୁ ସୁନ୍ଦର, ସୁଠାମ, ପୁଷ୍ପା ବୟସର ଯୁବକ ।

ରାତି ଗଡ଼ି ଚାଲେ । କିନ୍ତୁ ସନ୍ଦେହର ସୂତାଖିଅ ମିଳେନି । ଶେଷକୁ ଗିରଧାରୀ ପ୍ରସ୍ତାବ ଦିଏ ଦୁଇଜଣ ମିଶି ଆତ୍ମହତ୍ୟା କରିବା ପାଇଁ, ମାତ୍ର ପୁଷ୍ପା ମନାକରେ । ପିଲାମାନଙ୍କ ଭବିଷ୍ୟତ ପାଇଁ ସେ ସ୍ୱାମୀକୁ ଅନୁରୋଧ କରେ ତା' ଜୀବନ ପରିବର୍ତ୍ତେ ସ୍ୱାମୀଙ୍କ ଜୀବନ ରକ୍ଷା ପାଇଁ ।

ଗିରଧାରୀ ପୁଷ୍ପା କଥାକୁ ପରୀକ୍ଷା କରିବାକୁ ଚାହିଁଲା ଆଉ ପୁଷ୍ପା ସେଥିପାଇଁ ପ୍ରସ୍ତୁତ ହେଲା ।

ରାତିର ଅନ୍ଧକାର ଭିତରେ ପୁଷ୍ପା ତା'ର ପ୍ରଥମ ବାସର ରାତିର ପାଟଶାଢ଼ୀ, ସମସ୍ତ ସ୍ୱର୍ଣ୍ଣ ଅଳଙ୍କାର ପରିଧାନ କଲା ।

ମୁଣ୍ଡରେ ସଧବାସ୍ୱାଧ୍ୱୀ ନାରୀର ଭୂଷଣ ସ୍ୱରୂପ ସିନ୍ଦୂର ପିନ୍ଧି ସ୍ୱାମୀ ଆଗରେ ଉପସ୍ଥିତ ହେଲା । ତଥାପି ଗିରଧାରୀର ସନ୍ଦେହ ଦୂର ହେଲାନି ।

ସେଇ ବାଟରେ ସେ ପୁଷ୍ପାକୁ ନିଜ ସାଇକେଲ ଆଗରେ ବସାଇ ସେକ୍ଟର ଭିତରୁ ରଙ୍ଗ୍ ରୋଡ୍ ଦେଇ ବାହାରିଗଲା ।

ଉଡ଼ାଜାହାଜ ପଡ଼ିଆ ପାର ହେଲାପରେ ସେମାନେ ପହଞ୍ଚିଲେ ମୁଣ୍ଡିଆ ତଳ ପଡ଼ିଆ ପାଖେ । ଚାରିଆଡ଼େ ଜନମାନବ ଶୂନ୍ୟ ଖୋଲା ଟାଙ୍ଗର ପଡ଼ିଆ । ସାମ୍ନାରେ ମୁଣ୍ଡିଆ ।

ଅଳ୍ପ ଦୂରରେ ଘନ ଅନ୍ଧକାର ଭିତରେ ଲୁଚି ଯାଇଥାଏ ଆଦିବାସୀ ବସ୍ତି ।

ମୁଣ୍ଡିଆ ତଳ ପଡ଼ିଆରେ ଦୁଇଜଣ ପାଖାପାଖି ହୋଇ ଠିଆ-ହେଲେ । ପୁଷ୍ପା ପଚାରିଲା ଆଦେଶ ଦିଅ, ତୁମେ ଯାହା ଚାହିଁବ ମୁଁ ତା' କରିବା ପାଇଁ ପ୍ରସ୍ତୁତ ସ୍ୱାମୀ ।

ସନ୍ଦେହର ଭୂତ ଗିରିଧାରୀ ମୁଣ୍ଡକୁ ଗ୍ରାସ କରିସାରିଥିଲା । ସେ ପୁଷ୍ପାକୁ ଆଦେଶ ଦେଲା ତଳେ ଶୋଇଯିବା ପାଇଁ । ତା'ର ଆଦେଶ ପାଇ ତଳେ ଶୋଇଗଲା ପୁଷ୍ପା । ମୁହଁରେ ଚେନାଏ ହସ । ଗିରିଧାରୀ ଆସ୍ତେ ଆସ୍ତେ ତା'ର କର୍କଶ ହାତ ଦୁଇଟାକୁ ନେଇ ପୁଷ୍ପା ବେକ ପାଖେ ଲଗାଇଲା ।

ପୁଷ୍ପା ସେଇ ହସ ହସ ମୁହଁରେ ତା'ର ପାଦଧୂଳି ନେଲା ପରେ କହିଥିଲା, "ସ୍ୱାମୀ, ମୋତେ ଯଦି ମାରିବାକୁ ଚାହଁ ମାର, ମାତ୍ର ମୋ ଉପରେ ଅସତୀର ଛାପ ମାର ନାହିଁ···ମୁଁ···" ପୁଷ୍ପାର କଥା ସରିବା ପୂର୍ବରୁ ତାର ବେକଟାକୁ ଗିରିଧାରୀର ଦୁଇଟା କର୍କଶ ହାତ ଚପି ଦେଇଥିଲା । ବିନା ସର୍ତ୍ତରେ, ବିନା ଦ୍ୱିଧାରେ ମରଣକୁ ବରଣ କରି ପତିବ୍ରତାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ପୁଷ୍ପା ଚାଲିଗଲା ।

ପୁଷ୍ପାର ଶରୀର ନିସ୍ତେଜ ହୋଇଗଲା ପରେ, ଗିରିଧାରୀ ସେ ସ୍ଥାନ ଛାଡ଼ି ସାଇକେଲ ଧରି ଫେରି ଆସିଥିଲା । ମାତ୍ର ରାତିଯାକ ସେ ଶୋଇ ପାରିନଥିଲା । ଅନ୍ଧାରରେ ସେ ଦେଖିବାକୁ ପାଇଲା ପୁଷ୍ପାର ହସ ହସ

ମୁହଁରେ ଆତ୍ମଉତ୍ସର୍ଗ । ସତୀ ସ୍ୱଧ୍ୱୀ ନାରୀର ସ୍ନେହପୂର୍ଣ୍ଣ ଆଶ୍ୱାସନାବାଣୀ । ସାରା ରାତି ଗିରଧାରୀ ଅନିଦ୍ରା ରହିଲା । ସକାଳୁ ସକାଳୁ ସେ ପ୍ଲାଣ୍ଟକୁ ଯାଇଥିଲା ଛୁଟି ଆଣି ଗାଁକୁ ଚାଲିଯିବ ବୋଲି । ଛୁଟି ନେଇ ଫେରୁଥିଲା । ଫେରିଲା ବାଟରେ ଶେଷଥର ପାଇଁ ପୁଷ୍ପା ମୁହଁକୁ ଦେଖିବ ବୋଲି ସାଇକେଲ ଧରି ପୁଷ୍ପାର ପଡ଼ିଥିବା ଶବ ପାଖକୁ ଯାଇଥିଲା । ମନେ ମନେ ନିଜ ଭୁଲର ପ୍ରାୟଶ୍ଚିତ ପାଇଁ ପ୍ରସ୍ତୁତ ହେଉଥିବା ବେଳେ ଶୁକ୍ରା ମୁଣ୍ଡା, ମାର୍କସଙ୍କ ହାତରେ ଧରା ପଡ଼ିଲା ।

ରଘୁନାଥପାଲି ପୁଲିସ୍ ଗିରଧାରୀର ବୟାନ ରେକର୍ଡ଼ କଲାପରେ ତାକୁ କୋର୍ଟକୁ ଚାଲଣ କରିଥିଲେ । ନିଜ ସ୍ତ୍ରୀକୁ ହତ୍ୟା କରିଥିବା ହେତୁ ତାକୁ ୩୦୨ ଦଫାରେ ପୁଲିସ୍ ଚାର୍ଜସିଟ୍ କରିଥିଲେ ।



# ଚୌକିଦାର ହତ୍ୟା



ଓଡ଼ିଶା-ମଧ୍ୟପ୍ରଦେଶ ସୀମା ଅଞ୍ଚଳର ପାହାଡ଼ ପର୍ବତ ଘେରା ଗ୍ରେଟ ପୂର୍ତ୍ତ ବିଭାଗ ଷ୍ଟୋର ଘର । ଆଗପଛ ଦୁଇପଟେ ଲମ୍ବା ଲମ୍ବା ଶାଳ, ଶାଗୁଆନ ଘେରା ଜଙ୍ଗଲ । ଦୁଇ ପାହାଡ଼ ମଝିରେ ଗ୍ରେଟ ଅଂଜବେଷ୍ଟସ ଷ୍ଟୋର୍ ଘର । ଚାରିପଟେ ତାରବାଡ଼ ଘେରା ଖୋଲା ପଡ଼ିଆ । ପଡ଼ିଆ ଭିତରେ ଗୋଟେ କଣକୁ ଭଙ୍ଗା ଲୁହାଲକଡ଼ କେତେ ଖଣ୍ଡ ଜମା ହୋଇଥାଏ । ଆଉ ଗୋଟେ କଣକୁ ଗୋଟେ ଦୁଇଟା ଭଙ୍ଗା ରୋଡ଼ ରୋଲର ଆଉ ଅକାମୀ ବୁଲ୍‌ଡୋଜର । ଷ୍ଟୋର ଘର ସାମ୍ନାରେ, ଏଇ ବଣ ପାହାଡ଼ ଘେରା ଆଦିବାସୀ ବସ୍ତି ଦେଇ ରାସ୍ତାଟି ଲମ୍ବି ଯାଇଛି ମଧ୍ୟପ୍ରଦେଶର ରାଜଧାନୀ ଭୋପାଳ ସହର ଆଡ଼କୁ । ପୂର୍ତ୍ତ ବିଭାଗ ଷ୍ଟୋରର ପଶ୍ଚିମକୁ ପାହାଡ଼ କାନ୍ଥି ଉପରେ ଆଦିବାସୀ ବସ୍ତି । ବସ୍ତି ବୋଇଲେ କେତେ ଖଣ୍ଡ ନଳିଆ ଟାଇଲ ଛପର ଘର । ଲଙ୍ଗଳା ପିଲା । ଷ୍ଟୋର ଘରର ପଛପଟେ ଖଣ୍ଡେ ଦୂର ପର୍ଯ୍ୟନ୍ତ ପାହାଡ଼ ତଳ ତଇଲା ଜମି ପାହାଡ଼ କାନ୍ଥି ପର୍ଯ୍ୟନ୍ତ ଲାଗି ରହିଛି । ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ଏଇ ଗ୍ରେଟ ପୂର୍ତ୍ତ ବିଭାଗ ଷ୍ଟୋର । ପାହାଡ଼ କାଟି ପୋଲ ଆଉ ରାସ୍ତା ତିଆରି କଲାବେଳେ ଏଇ ଷ୍ଟୋର ଘରଟି ନିର୍ମାଣ କରାଯାଇଥିଲା ।

ଷାଠିଏ ବର୍ଷର 'ବୁଢ଼ା' ଏଇ ସରକାରୀ ଷ୍ଟୋରର ଚଉକିଦାର । ସମସ୍ତେ ତାଙ୍କୁ ଡାକନ୍ତି ବୁଢ଼ା । ଷାଠିଏ ବର୍ଷ ହେଲେ ବି ବୁଢ଼ା ବୟସର ତୁଳନାରେ ଦମ୍ଭିଲା । ସବୁବେଳେ ହାତରେ ଖଣ୍ଡେ ଲାଠି ଧରି ବୁଢ଼ା ଷ୍ଟୋର ଜଗିଥାଏ ଜଗେ । ଏଇ ଜାଗାରେ ଭୟ ବା କାହାକୁ ? କିଏ ବା ଆସି ଏଇ ପୁରୁଣା ବୁଲଡୋଜର ନେବ ?

ମାଘ ମାସ ଶୀତ ସକାଳ । ସେ ବର୍ଷ ଶୀତଟା ଖୁବ୍ ଜୋର୍‌ରେ ପଡ଼ୁଥାଏ । ମାଘ ଶୀତ ବଡ଼ ବାଘ, ପ୍ରବାଦ ଅଛି । ପୁଣି ପାହାଡ଼ ତଳେ ଶୀତର ପ୍ରକୋପ ଆହୁରି ବେଶି । ଶୀତ ସକାଳୁ ଚଉକିଦାର ବୁଢ଼ା ଷ୍ଟୋର ଘର ପାଖ ଚଉକିଦାରୀ ସେଡ଼ରୁ ବାହାରି ରାସ୍ତାପାଖ କଲଭର୍ଟ୍ ଉପରେ ବସି ସକାଳ ଖରା ପୋଉଥାଏ । ଦିନ ଆଠଟା ଉପରେ ହେଲେ ବି ଦେହକୁ ଖରା କାଟୁ ନଥାଏ । କଲଭର୍ଟ୍ ଉପରେ ବସି ଖରା ପୋଉଥିବା ସମୟରେ ବୁଢ଼ାର ପୁତୁରା ଶଙ୍କର ତା' ସାଇକେଲ ଗଡ଼େଇ ଗଡ଼େଇ ଆସି ପହଞ୍ଚିଲା । ଶଙ୍କର ପ୍ରାୟ ସବୁଦିନ ଆସେ ଏଇମିତି ସାଇକେଲରେ । ଷ୍ଟୋରରେ ସାଇକେଲ ଥୋଇ ରାସ୍ତା କାମ ତଦାରଖ କରିବାକୁ ଯାଏ । ଜଙ୍ଗଲ ରାସ୍ତା କାମ ପାଇଁ ଶଙ୍କର ପେଟି କଂଟ୍ରାକ୍ଟର । ସକାଳୁ ଆସେ, ଷ୍ଟୋରରେ ସାଇକେଲ ରଖି କାମ ଦେଖି ସନ୍ଧ୍ୟାବେଳକୁ ସାଇକେଲ ଧରି ଫେରେ । ସେଦିନ ଶଙ୍କର ସାଇକେଲ ଚକା ପଙ୍କଚର ହୋଇଯାଇଥିଲା । ସାଇକେଲ ରଖିଦେଇ ସେ ବୁଢ଼ା ସଙ୍ଗେ ଦୁଇପଦ କଥାବାର୍ତ୍ତା ହେଲାପରେ ନିଜ କାମ ପାଇଁ ଚାଲିଗଲା । କଲଭର୍ଟ୍ ଉପରେ ଖଣ୍ଡେ ଦୁଇଖଣ୍ଡ ବଡ଼ ଟାଣି ବୁଢ଼ା ଷ୍ଟୋର ଘରଆଡ଼େ ଫେରିଲା ।

ସେଇଦିନ ପ୍ରାୟ ଦିନ ୫-୩୦ ବେଳକୁ ଶଙ୍କର ତା' କାମ ସାରି ଷ୍ଟୋର ଘରକୁ ଫେରିଲା ତା' ସାଇକେଲ ନେଇ ଘରକୁ ଫେରିବା ପାଇଁ । ଷ୍ଟୋର୍ ବାରଣ୍ଡାରେ ସାଇକେଲ ଥୁଆ ହୋଇଥାଏ । ମାତ୍ର ବୁଢ଼ାର ଦେଖା ନାହିଁ । ଶଙ୍କର ଭାବିଲା ବୁଢ଼ା ବୋଧେ ପାହାଡ଼ ତଳ ତଇଲା ଆଡ଼େ ଯାଇଛି । ଖୁବ୍ ଜୋର୍‌ରେ ପାଟିକରି ଡାକିଲା, ମାତ୍ର ତା'ର ଉତ୍ତର କେହି ଦେଲେନି । ବୁଢ଼ାକୁ ନ ପାଇ ଶଙ୍କର ତା' ଶୋଇବା ଘର ବାଉଁଶ କବାଟ ଠେଲି ଘର ଭିତରକୁ ଗଲା । ଦେଖିଲା ବୁଢ଼ା ଦଇଟା କମଳ ଘୋଡ଼ହୋଇ ଉତ୍ତରକୁ ମୁଣ୍ଡକରି ଶୋଇଛି । ଅବେଳରେ ଶୋଇବା, ଶଙ୍କର କେବେହେଲେ ଦେଖିନଥିଲା । ସେ ପୁଣି ଡାକିଲା । ମାତ୍ର ବୁଢ଼ା ତା' ଡାକ ଶୁଣିଲାନି । ସନ୍ଦେହରେ ଶଙ୍କର ବୁଢ଼ା ଉପରୁ କମ୍ବଳ କାଢ଼ିଦେଲା । କମ୍ବଳ କାଢ଼ିଦେଲା ପରେ ସେ ଯାହା ଦେଖିଲା, ତା' ଦେହ ଭୟରେ ଶୀତେଇ ଉଠିଲା । ଏ କଅଣ ?

ବୁଢ଼ାର ଦେହ ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ପଡ଼ିଥାଏ । ଭୟରେ ସେ ସେଇ ମୁହୂର୍ତ୍ତରେ ଘରୁ ବାହାରି ଆସିଲା ।

ଖଣ୍ଡେ ଦୂର ପର୍ଯ୍ୟନ୍ତ ନିଜ ସାଇକେଲକୁ ଶଙ୍କର ଏକପ୍ରକାର ଟାଣି ଟାଣି ନେଇ ଜଣଙ୍କ ବସ୍ତ୍ରାକଡ଼ ଗୃ' ଦୋକାନ ପାଖେ ଉପସ୍ଥିତ ହେଲ । ତା' ଭାଇ ଲକ୍ଷ୍ମଣଙ୍କୁ ସାଙ୍ଗରେ ଧରି ବୁଢ଼ାର ମୃତ୍ୟୁଘଟଣା ଟାଲିଆ ପୋଲିସ ଷ୍ଟେସନରେ ଖବର ଦେଲାବେଳକୁ ରାତି ସାଢ଼େ ନଅ । ସ୍ୟା ମଧ୍ୟରେ ସେମାନେ ଦୂର୍ତ୍ତି ବଜାରର ଏସ୍.ଡି.ଓ.ଙ୍କୁ ଖୋଜିଥିଲେ, ମାତ୍ର ତାଙ୍କୁ ପାଇନଥିଲେ । ଥାନାବାବୁ ମର୍ଡ଼ର କେସ୍ ଖବର ପାଇ ସଙ୍ଗେ ସଙ୍ଗେ ଶଙ୍କର ସଙ୍ଗେ ବୁଢ଼ା ମରିପଡ଼ିଥିବା ସ୍ଥାନକୁ ଯାଇଥିଲେ । ଶଙ୍କର ତାଙ୍କ ଆଗରେ ଆଗରୁ ବର୍ଣ୍ଣନା କରିବା ମୁତାବକ ସେ ବୁଢ଼ାର ମୃତ-ଦେହ ଚଉକଦାରୀ ସେଡ଼୍ ଭିତରେ ପଡ଼ିଥିବାର ଦେଖିଲେ । ରାତିର ଅନ୍ଧାର ଭିତରେ ସେ ପେଟ୍ରୋମାକ୍ସ ଲଗାଇ ତଦନ୍ତ ଆରମ୍ଭ କଲେ, ମାତ୍ର ଶୀତୁଆ ପବନରେ ସେ ଦିନ ରାତିରେ ତଦନ୍ତରେ ବେଶିକିଛି ଆଗେଇ ପାରିନଥିଲେ । ଥାନାବାବୁ ମିଃ ଗୁରୁ, ରାତିକ ପାଇଁ ସେଠାରେ ପୁଲିସ୍ ମୁତୟନ କରି ଫେରିଲେ ।

ତା' ପରଦିନ ସକାଳୁ ସକାଳୁ ମିଃ ଗୁରୁ, ପୁଲିସ୍ କୁକୁର ବାଦଲକୁ ସଙ୍ଗରେ ଧରି ଘଟଣା ସ୍ଥଳରେ ପହଞ୍ଚିଥିଲେ । ସାଙ୍ଗରେ ବୈଜ୍ଞାନିକ ପଦ୍ଧତିରେ ତଦନ୍ତ ପାଇଁ ଦରକାରୀ ଯନ୍ତ୍ରପାତି ମଧ୍ୟ ଆଣିଥିଲେ ।

ଘଟଣାସ୍ଥଳରେ ପହଞ୍ଚିଲା ପରେ, ସେ ପୁଲିସ କୁକୁର 'ବାଦଲ'କୁ ମୃତ ବ୍ୟକ୍ତି ବୁଢ଼ାର ରକ୍ତରୁ ସେଣ୍ଟ ଦେଲେ । କୁକୁର ବାଦଲ ସେଣ୍ଟ ନେଇ ଷ୍ଟୋର ଗୃହପଟେ ବୁଲିଲା । ଅଳ୍ପ ସମୟ ପରେ ତଇଲା ଜମି-ଆଡ଼େ ଯାଇ ପାହାଡ଼ତଳ ପର୍ଯ୍ୟନ୍ତ ଗଲା, ମାତ୍ର ତାପରେ କୁକୁର କିଛି ସେଣ୍ଟ ବାରିପାରିଲା ନାହିଁ । ବାଧ୍ୟହୋଇ ଷ୍ଟୋର ଘରଆଡ଼େ ଫେରିଲା । ପୁଲିସ୍ କୁକୁର ବାଦଲ ଫେରିଲା ପରେ ମିଃ ଗୁରୁ ତନ୍ନ ତନ୍ନ କରି

ଅପରାଧ ସ୍ଥାନଟିକୁ ଦେଖିବାରେ ଲାଗିଲେ । ଅପରାଧ ସ୍ଥଳୀଟି ଦେଖିଲା-ବେଳେ ସେ ଦେଖିପାରିଲେ ଯେ, ଚଉକିଦାର ସେଡ୍ ପାଖରେ ଗୋଟେ ଲମ୍ବା ଲଠି ଦେହରେ କିଛି ରକ୍ତ ଲାଗି ପଡ଼ିଛି । ବୁଢ଼ାର ମୁଣ୍ଡତଳେ ଗୋଟେ ଗ୍ରେଟ ବ୍ୟାଗ୍ ରକ୍ତ ଲାଗି ପଡ଼ିଥାଏ । ଏପରିକି ବୁଢ଼ା ପାଳିଥିବା ଗୋଟେ ଗ୍ରେଟ କୁକୁର ଛୁଆ ଦେହରେ ମଧ୍ୟ ମଣିଷ ରକ୍ତ ଲାଗିଥିଲା । କୁକୁର ଛୁଆଟି ସବୁବେଳେ ବୁଢ଼ା ଘରକଣରେ ଶୁଏ··· । ଆତତାୟୀ ବୁଢ଼ାକୁ ସେ ଶୋଇଥିବା ଅବସ୍ଥାରେ, ଆଉ ସେଇ ଘର ଭିତରେ ହତ୍ୟା କରିଛି ବୋଲି ତଦନ୍ତକାରୀ ଅଫିସର ଜାଣିପାରିଲେ । ଘର ଭିତରୁ ବାହାରିଲା ପରେ ମିଃ ଗୁରୁ ଦେଖିବାକୁ ପାଇଲେ ଯେ, ଠିକ୍ ଷ୍ଟୋରରୁମ୍ ବାରଣ୍ଡା ତଳେ ଦୁଇ ତିନିଖଣ୍ଡ ଖଣ୍ଡିଆ ସିଗାରେଟ୍ ପଡ଼ିଥିଲା । ବୁଢ଼ା କେବେହେଲେ ସିଗାରେଟ୍ ପିଏନି, ମାତ୍ର ସିଗାରେଟ୍ ପଡ଼ିଥିବା ଘଟଣା ତଦନ୍ତକାରୀ ଅଫିସର ମିଃ ଗୁରୁଙ୍କ ମନରେ ସନ୍ଦେହ ସୃଷ୍ଟି କଲା । ସେ ତିନିଖଣ୍ଡ ଖଣ୍ଡିଆ ସିଗାରେଟ୍‌କୁ ସିଜ୍ କରି ଦେଖିଲେ ଯେ,ସେ ସିଗାରେଟ୍ ଥିଲା "ବ୍ଲୁ ବାର୍ଡ଼ନ୍" ସିଗାରେଟ୍ । ପଲିଥିନ୍ କାଗଜରେ ଗୁଡ଼ାଇ ମିଃ ଗୁରୁ ସିଗାରେଟ୍ ବଟ୍‌କୁ ଫୋରେନ୍‌ସିକ୍ ପ୍ରଫେସରଙ୍କ ପାଖକୁ ପଠାଇବାକୁ ଠିକ୍ କଲେ ।

ଘର ଆଉ ବାହାର ଦେଖିଲା ପରେ, ତଦନ୍ତକାରୀ ଅଫିସର ମିଃ ଗୁରୁ ପୁଲିସ କୁକୁର ବାଦଲ ଯାଇଥିବା ପାହାଡ଼ତଳି ତଳିଲ ଆଡେ ଯାଇଥିଲେ । ଅଳ୍ପ ବାଟ ଗଲାପରେ ସେ ଦେଖିବାକୁ ପାଇଲେ ଗୋଟେ ଜାଗାରେ ଯୋତା ଚିହ୍ନ ପଡ଼ିଛି । ଏପରି ଗୋଟେ ଜାଗାରେ ତଳିଲ ଯୋତା ଚିହ୍ନ ପଡ଼ିବା ତାଙ୍କ ମନରେ ସନ୍ଦେହ ସୃଷ୍ଟି କଲା । ସେ ସଙ୍ଗେ ସଙ୍ଗେ ବାକ୍‌ସରୁ ପ୍ଲାଷ୍ଟର ଅଫ୍ ପାରିସ୍ ବାହାର କରି ଯୋତା ଚିହ୍ନର 'କାଷ୍ଟ୍' ତିଆରି କରିନେଲେ । ଅପରାଧୀ ବିଜ୍ଞାନରେ ଯୋତା, ପାଦଚିହ୍ନ ଅପରାଧୀକୁ ଧରାଇବାରେ ବହୁ ସାହାଯ୍ୟ କରିଥାଏ । ପ୍ରତ୍ୟେକ ତଦନ୍ତ-କାରୀ ଅଫିସରକୁ ପୁଲିସ ଟ୍ରେନିଂ ସମୟରେ ଟିପ ଚିହ୍ନ, ପାଦ ଚିହ୍ନ ଇତ୍ୟାଦି ବିଷୟ ଶିକ୍ଷା ଦିଆଯାଇଥାଏ । ଯୋତା ଚିହ୍ନର କାଷ୍ଟ୍ ନେଲା-

ପରେ ମିଃ ଗୁରୁ, ପାଖାପାଖି ଲୋକମାନଙ୍କଠାରୁ ସାକ୍ଷୀ ପ୍ରମାଣ ଗ୍ରହଣ କରିବା ପାଇଁ ପଚରା ଉଚରା ଆରମ୍ଭ କଲେ ।

ଚଉକିଦାର ବୁଢ଼ାର ମୃତ୍ୟୁ ଖବର ଶୁଣି ବହୁତ ଲୋକ ବଙ୍ଗଳା ପାଖେ ପହଞ୍ଚି ଯାଇଥାନ୍ତି । ସମସ୍ତେ କୌତୂହଳ, ଭୟାତୁର ଆଖିରେ ପୁଲିସ ତଦନ୍ତ ଦେଖୁଥାନ୍ତି । ତଦନ୍ତକାରୀ ଅଫିସର ପଚରା ଉଚରା କଲାବେଳେ ଦେଖଣାହାରୀଙ୍କ ମଧ୍ୟରୁ ରଫିଉଲ୍ଲା କହିଲା ଯେ,ସେ ପୂର୍ବଦିନ, ଦିନ ଗୁରିଟାବେଳେ ଜଙ୍ଗଲକୁ ଗଲାବାଟରେ ବୁଢ଼ାକୁ କଲଭର୍ଟ ଉପରେ ବସିଥିବାର ଦେଖିଥିଲା । ତଦନ୍ତକାରୀ ଅଫିସରଙ୍କ ପ୍ରଶ୍ନର ଉତ୍ତର ଦେଇ ସେ ପୁଣି କହିଲା ଯେ, ସେ ଗଲାବେଳେ ସବାଫତ୍ ବୁଢ଼ା ସଙ୍ଗେ କଥାବାର୍ତ୍ତା ହେଉଥିଲା । ତା' କଥାକୁ ସପୋର୍ଟ କରି ଛେଳି ଜଗୁଆଳୀ ଜଗା ଆଉ ହରିଦାସ କହିଥିଲେ ସେମାନେ ଛେଳି ଚରେଇ ଜଙ୍ଗଲରୁ ଫେରିଲା ବାଟରେ ବୁଢ଼ା ଆଉ ସବାଫତ୍ ଦୁହେଁ କଲଭର୍ଟ ପାଖେ କଥାବାର୍ତ୍ତା ହେଉଥିବାର ଦେଖିଥିଲେ । ଆଦିବାସୀ ଝିଅ ପୀଉଷ ମିଃ ଗୁରୁଙ୍କ ଆଗରେ କହିଲା ଯେ, ସେଦିନ ସେ ଜଙ୍ଗଲକୁ କାଠ ଆଣିବାକୁ ଗଲା-ବାଟରେ, ମାମୁଁ ଘରେ ମଇଁଷି ଜଗୁଆଳ ସବାଫତ୍ ଗୋଟେ ଚେକ୍ ଲୁଙ୍ଗି ଆଉ ଗାଢଗାରିକା ସାର୍ଟ ପିନ୍ଧି ହାତରେ ଗୋଟେ ଠାଙ୍ଗିଆ ଧରି ମଇଁଷି ତଡ଼ି ତଡ଼ି ଜଙ୍ଗଲ ଆଡ଼ୁ ଫେରୁଥିଲା ।

ମିଃ ଗୁରୁ, ଦେଖଣାହାରୀ ଲୋକମାନଙ୍କଠାରୁ ସାକ୍ଷୀ ନେଇ ଜାଣିବାକୁ ପାଇଥିଲେ ଯେ, ସବାଫତ୍ ଆଉ ବୁଢ଼ା ଦୁଇଜଣଯାକ ଦିନ ଗୁରିଟାବେଳେ କଥାବାର୍ତ୍ତା ହୋଇଥିଲେ । ତା'ପରେ ବୁଢ଼ାକୁ କେହି ଦେଖିନାହାନ୍ତି । ସବାଫତ୍‌କୁ ସନ୍ଦେହ କରି ସେ ଅନଓ୍ୱାର୍‌ଙ୍କ ଘରକୁ ଗଲେ । ଅନଓ୍ୱାର୍ ଓରଫ ମାମୁଁଙ୍କ ଘରେ ସବାଫତ୍ କାମ କରେ । ଅନଓ୍ୱାର୍, ମିଷ୍ଟର ଗୁରୁଙ୍କ ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ, ସବାଫତ୍ ପୂର୍ବଦିନ ୫ଟା ବେଳକୁ ମଇଁଷି ଚରେଇ ଫେରିଥିଲା । ଫେରିଲାବେଳେ ସେ ସାଙ୍ଗରେ ଗୋଟେ ନୂଆ ଟ୍ରାଞ୍ଜିଷ୍ଟର ଆଣିଥିଲା ଆଉ କହୁଥିଲା ଯେ ସେ ବୁଢ଼ା ସାଙ୍ଗେ କାଳିକରି ଆସିଛି । ଯେତେବେଳେ

ମିଃ ଗୁ ରୁ ସତ୍ୟଫଲ୍କୁ ଖୋଜିଲେ, ଅନଓ୍ୱାର୍ କହିଲା ଯେ, ସତ୍ୟଫଲ୍ ବଜାରକୁ ତା' ବାହାଘର ଲାଗି କିଛି ଜିନିଷପତ୍ର କିଣିବାକୁ ଯାଇଛି, ଅଳ୍ପ ସମୟ ମଧ୍ୟରେ ଫେରିବ ।

ସତ୍ୟଫଲ୍ର ହାବଭାବ ଉପରେ ମିଃ ଗୁ ରୁଙ୍କର ସନ୍ଦେହ ଜମାଟ ବାନ୍ଧିବାରେ ଲାଗିଲା । ଯଦି ସେ ପଳାଇଯାଏ ତା' ହେଲେ ମିଳିବା କଷ୍ଟକର ହୋଇପଡ଼ିବ । ତାଙ୍କ ମନର ଉତ୍ତେଜନା ବଢ଼ିବାରେ ଲାଗିଲା, ମାତ୍ର ସେ କାହାକୁ କିଛି ନକହି ସାଦା ପୋଷାକରେ କିଛି ପୁଲିସ ଅଫିସରଙ୍କୁ ନିକଟସ୍ଥ ବଜାର ଆଡ଼େ ପଠେଇ ନିଜେ ଅପେକ୍ଷା କରି ରହିଲେ । ଏଥିମଧ୍ୟରେ ବୁଢ଼ାର ମୃତ ଦେହକୁ ଶବ ବ୍ୟବଚ୍ଛେଦ ପାଇଁ ଡାକ୍ତରଖାନାକୁ ପଠାଯାଇ ସାରିଥାଏ । ବନ୍ଦୋବାଟରେ ସାଧା ପୋଷାକ-ଧାରୀ ପୁଲିସ୍ ମଧ୍ୟ ସତ୍ୟଫଲ୍ର ଆସିବା ବାଟକୁ ଚାହିଁ ରହିଥିଲେ । ସେଦିନ ପ୍ରାୟ ରାତି ଆଠଟା ବେଳକୁ ସତ୍ୟଫଲ୍ ଫେରିଥିଲା ଅନଓ୍ୱାର ଘରକୁ ।

ସେ ଫେରିଲା ପରେ ପରେ, ମିଃ ଗୁ ରୁ ସତ୍ୟଫଲ୍କୁ ଅଟକାଇ ଥିଲେ । ଅଟକାଇଲା ପରେ ସେ ମଧ୍ୟ ତା'ର ପରସ୍ନାଲ୍ ସର୍ଚ୍ଚ ନେଲା-ବେଳେ ଦେଖିବାକୁ ପାଇଲେ ଯେ, ତା' ପିନ୍ଧିଥିବା ସାର୍ଟ ଦେହରେ ରକ୍ତ ଦାଗର କଣିକା । ଦେହରେ ଗୋଟେ ଜାଗାରେ ଆଞ୍ଚୁଡ଼ି ହେବାର ଦାଗ । ସତ୍ୟଫଲ୍ ମିଃ ଗୁ ରୁଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଥିଲା ଯେ, ତା' ଲୁଗାରେ ଲାଗିଥିବା ଦାଗ ରକ୍ତ ନୁହେଁ, ଗୋଟେ ଜଙ୍ଗଲ ଫଳର ରଙ୍ଗ । ତାଙ୍କର ପ୍ରତ୍ୟେକ ପ୍ରଶ୍ନକୁ ସେ ଏଡ଼େଇ ଦେବାରେ ଲାଗିଥିଲା ।

ମାତ୍ର ତଦନ୍ତକାରୀ ଅଫିସରଙ୍କ ପ୍ରଶ୍ନବାଣକୁ ସେ ବେଶୀ ସମୟ ସହ୍ୟ କରି ପାରିନଥିଲା । ଅପରାଧୀ ବା କେତେ ସମୟ ଅପରାଧକୁ ଲୁଚେଇ ରଖି ପାରିବ । ସେ ସମ୍ପୂର୍ଣ୍ଣ ଘଟଣାଟି ତଦନ୍ତକାରୀ ଅଫିସରଙ୍କ ଆଗେ ମାନିଯାଇ କହିଥିଲା ଯେ, ସେହି ଅଳ୍ପଦିନ ତଳେ ତା' ବାପ ଗାଁରୁ

ଖବର ପଠାଇଥିଲି ତା'ର ବାହାଘର ଲାଗି । ତା'ଗାଁ ପାଖ ଗାଁରେ ତା'ର ବାହାଘର ଠିକ୍ ହୋଇଯାଇଛି । ସେ ଟଙ୍କା ପଇସା ଧରି ଆସିଲେ ବାହାଘର ଫଗୁଣ ମାସ ଶେଷ ଆଡ଼କୁ ହେବ । ବାହାଘର କଥା ଶୁଣି, ସବ୍‌ଫଟ୍ର ମନ ଖୁସିରେ ପୂରି ଉଠିଲା । ମାତ୍ର ପଇସା କଥା ମନେପଡ଼ିଲା ବେଳେ ତା' ହସିଲା ମୁହଁଟି ଶୁଖି ଉଠିଥିଲା । ପଇସା ଯୋଗାଡ଼ ପାଇଁ ଚିନ୍ତା କଲା ।

ଦିନ ୪ଟାବେଳେ ସେ ମଇଁଷି ଚରେଇ ଫେରିଲା ପରେ ବୁଢ଼ାକୁ କଲଭର୍ଟ୍ ପାଖରେ ବସିଥିବାର ଦେଖି ତା' ସଙ୍ଗେ କଥାବାର୍ତ୍ତା ହେଲା । କଥା ପ୍ରସଙ୍ଗରେ ସେ କହିଥିଲା ଯେ, ତା' ବାହାଘର ଠିକ୍ ହୋଇଯାଇଛି । ବାହାଘର ଠିକ୍ ହେବା କଥା ଶୁଣି ବୁଢ଼ା ତାକୁ ମିଠା ମାଗିଥିଲା । ଦୁହେଁଯାକ କଥାବାର୍ତ୍ତା ହୋଇ ଷ୍ଟୋର୍‌କୁ ଫେରିଲେ । ଫେରିଲା ପରେ, ସବ୍‌ଫଟ୍ର ଯାଇ ରସ୍ତାକଡ଼ ଦୋକାନର 'କଳାକାନ୍ଦ' (ଏକ ପ୍ରକାର ମିଠା) ଆଣିଲା । ଆସିବା ବାଟରେ 'କଳାକାନ୍ଦ'ରେ କିଛି ନିଶା ଦ୍ରବ୍ୟ ମିଶାଇ ଦେଲା ।

ଷ୍ଟୋରରେ ପହଞ୍ଚି, ସବ୍‌ଫଟ୍ର ବୁଢ଼ାକୁ କଳାକାନ୍ଦ ଖାଇବାକୁ ଦେଲା । ବୁଢ଼ା ମିଠା ଖାଇଲା ବେଳେ ସବ୍‌ଫଟ୍ର ସିଗାରେଟ୍ ପରେ ସିଗାରେଟ୍ ଟାଣିବାକୁ ଲାଗିଥାଏ । ମିଠା ଖାଇ ବୁଢ଼ା ଘର ଭିତରେ ପଶି କମ୍ବଳ ଘୋଡ଼ି ହେଲାପରେ, ସବ୍‌ଫଟ୍ର ହଠାତ୍ ଘର ଭିତରେ ପଶି ତା' ସାଙ୍ଗରେ ଆଣିଥିବା ଟାଙ୍ଗିଆ ସାହାଯ୍ୟରେ ବୁଢ଼ାକୁ ହତ୍ୟା କଲା । ବୁଢ଼ାକୁ ହତ୍ୟା କଲାପରେ ସେ ତା' ମୁଣ୍ଡତଳ ବ୍ୟାଗରୁ ଗୋଟେ ନାଲି ଭେଲ୍‌ଭେଟ୍ ମୁଣିରେ ଗୁଡ଼େଇ ରଖିଥିବା ଚାବିକାଠି କାଢ଼ି ବୁଢ଼ାର ବାକ୍‌ସରୁ ଟଙ୍କା ପଇସା ସବୁ ଲୁଟି ନେଇଥିଲା । ଗଲାବେଳେ ବୁଢ଼ା ଉପରେ କମ୍ବଳ ଘୋଡ଼େଇ ଦେଇ ଚାଲିଯାଇଥିଲା ।

ବୁଢ଼ା ଟ୍ରଙ୍କରୁ ପାଇଥିବା ପଇସାରେ ସବ୍‌ଫଟ୍ର ସେଦିନ ରାତିରେ ସେ ପାଖ ବଜାରରୁ ଗୋଟେ ନୂଆ ଟ୍ରାଞ୍ଜିଷ୍ଟର କିଣି ଫେରିଥିଲା । ବାକି

ପଇସା ତା' ପାଖରେ ଥିଲା । ତଦନ୍ତକାରୀ ଅଫିସର ସତ୍ୟଫଲ୍ ପାଖରୁ ପଇସା, ଭେଲ୍‌ଭେଟ୍ ମୁଣି, ବୁଢ଼ା ଟ୍ରଙ୍କର ଚାବି, କିଣିଥିବା ଟ୍ରାଞ୍ଜିଷ୍ଟର ସମସ୍ତ ଜବତ କଲେ । ସେ ମଧ୍ୟ କଳାକାଆ ବିକି କରିଥିବା ଦୋକାନୀ, ଟ୍ରାଞ୍ଜିଷ୍ଟର ଦୋକାନୀ ଠାରୁ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରିଥିଲେ । ସମସ୍ତ ସାକ୍ଷ୍ୟ ପ୍ରମାଣ ନେଲା ପରେ, ମିଃ ଗୁରୁ ସତ୍ୟଫଲ୍‌ଙ୍କୁ ୩୦୨।୩୯୭ ଦଫାରେ ଚାର୍ଜସିଟ୍ କରି କୋର୍ଟକୁ ଚାଲାଣ କରିଥିଲେ ।

ସମ୍ବଲପୁର ଅତିରିକ୍ତ ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ବୁଢ଼ା ମର୍ଡ଼ର କେସ୍‌ର ବିଚାର ଆରମ୍ଭ ହେଲା ।

ବିଚାରପତି ସତ୍ୟଫଲ୍‌ଙ୍କୁ ବୁଢ଼ାକୁ ହତ୍ୟା କରିଥିବା ଅପରାଧରେ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରିଥିଲେ ।



# ଝିମିଟି ଖେଳରୁ ମହାଭାରତ



ଶୁକରମଲ ପାହାଡ଼ ତଳ ଗାଁ ବରୁଡ଼ା । ଗାଁଟି ଯେପରି ପୁରାତନ ସେପରି ବିଶାଳ । ସବୁ ଜାତିକର ଲୋକ ବହୁବର୍ଷ ଧରି ଏଇ ଗାଁରେ ବସବାସ କରି ଆସୁଛନ୍ତି । ଗାଁ ଠାରୁ ଖଣ୍ଡେ ଦୂରରେ ଶୁକରମଲ ପାହାଡ଼ ଲମ୍ବି ଯାଇଛି ରଣପୁର ସରହଦ ଆଡ଼େ । ଆଗେ ଏଇ ପାହାଡ଼ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ମହାବଳ ବାଘ ଠାରୁ ଆରମ୍ଭ କରି ଭୟଙ୍କର ବନ୍ୟଜନ୍ତୁମାନେ ଏଇ ଜଙ୍ଗଲରେ ଥିଲେ । ଗାଁ ଲୋକମାନଙ୍କ ପାଇଁ କାଠ ବାଉଁଶର ଅଭାବ ନଥିଲା । ଆକାଶ ଛୁଆଁ ଶାଳ, ପିଆଶାଳ ଗଛ ସାଙ୍ଗକୁ ଗୁଚ୍ଛିଡ଼ ଆମ୍ବ, ପଣସ ଗଛ ପାହାଡ଼ର ମୂଳରୁ ଶେଷ ପର୍ଯ୍ୟନ୍ତ ଭରି ରହିଥିଲା । ଏବେ ସେ ଗଛ ନାହିଁ କି ସେ ଜନ୍ତୁ ନାହାନ୍ତି । ଗାଁର ପୁରୁଣା ଲୋକମାନେ ତାଙ୍କ ପିଲାଦିନର କଥା ମନେ ପକେଇଲା ବେଳେ ଏଇ କଥାହିଁ କହିଥାନ୍ତି । ଶୁକରମଲ ପାହାଡ଼ରୁ ବଡ଼ ବଡ଼ ଗଛ ଲଣ୍ଡା ହୋଇଗଲେ ବି, କଣ୍ଟା-ଝଣ୍ଟା ଜଙ୍ଗଲରେ ଏବେ ମଧ୍ୟ ପାହାଡ଼ ମଧ୍ୟ-ଦେଇ ଯିବା କଷ୍ଟ । ମହାବଳ, ହରିଣ, ମିରିଗ କି ସମ୍ବର ପ୍ରଭୃତି ବନ୍ୟଜନ୍ତୁ ନଥିଲେ ବି କେତେଗୁଡ଼ିଏ ଶଙ୍ଖ ଭାଲୁ ପାହାଡ଼ର ପଥର ମୁଣ୍ଡିଆ ଖୋଲରେ ଏବେ ବି ରହୁଛନ୍ତି । ଶୀତ ଦିନ ସନ୍ଧ୍ୟା ହେଲେ ଭାଲୁମାନେ ଦଳ ଦଳ ହୋଇ ପାହାଡ଼ ମୁଣ୍ଡିଆରୁ ବାହାରି ଆଖ ପାଖ ଆଖୁ କିଆରିମାନଙ୍କରେ ପଶି ଆଖୁ ଖାଆନ୍ତି । ଆଖୁ ଖାଇବା ପାଇଁ ଭାଲୁମାନେ ପାଗଳ । ସେମାନେ ଆଖୁ କିଆରିରେ ପଶି ମଡ଼ମାଡ଼୍ କରି ଆଖୁ ଦଣ୍ଡା ଭାଙ୍ଗି ଖାଇଲା ବେଳେ ମଣିଷ କି ଭାଲୁ ଖାଇବା ଭିତରେ କିଛି ତଫାତ୍ ଜଣା ପଡ଼େନି ।

ଶୁକରମଲ ପାହାଡ଼ ତଳ ଡଇଲା ଜମିରେ ଗ୍ରାମବାସୀମାନେ ଆଖୁଚାଷ କରିଥାନ୍ତି । ଆଖୁଚାଷ ଏ ଅଞ୍ଚଳର ଏକ ଲାଭ ଜନକ ବ୍ୟବସାୟ । ଅନ୍ୟାନ୍ୟ ଫସଲ ତୁଳନାରେ ଆଖୁଚାଷରେ ଚାଷୀମାନେ ବିଶେଷ ଲାଭବାନ ହୋଇଥାନ୍ତି । ବରୁଡ଼ା ଗାଁର ଘନ ଲେଙ୍କା ରାତିରୁ ଯାଇଥିଲା ତା' ଗାଁ ମୁଣ୍ଡ ଆଖୁଶାଳକୁ । ଶାଳରେ ଆଖୁପେଡ଼ା ଚାଲି-ଥାଏ । ବିଲରେ ଆଖୁକଣ୍ଠା । ଶାଳରେ ନ ଜଗିଲେ ନ ଚଳେ । ସନ୍ଧ୍ୟା ବୁଡ଼ୁ ବୁଡ଼ୁ ଶଙ୍ଖିଆ ଭାଲୁଗୁଡ଼ାକ ପାହାଡ଼ ମଥାରୁ ଖସି ଚୁପ୍‌ଚାପ୍ ଆଖୁ-କିଆରି ଭିତରେ ପଶିଯାଆନ୍ତି । ଯେତିକି ଖାଆନ୍ତି ଖାଆନ୍ତି ତା' ଠାରୁ ଅଧିକା ଭାଙ୍ଗି ରୁଜି ନଷ୍ଟ କରନ୍ତି । ଘନ ଲେଙ୍କା ପରି ସବୁ ଆଖୁ ଚାଷୀ-ମାନେ ଶାଳ ଜଗିଲା ବେଳେ ହାତରେ ଟେଣ୍ଟା, ଭାଲ ନିଆଁହୁଳା ଧରି ଜଗି ରୁହନ୍ତି । ଠିଆ ଆଖୁକିଆରିରେ ଭାଲୁଙ୍କ ଭୟ, ଏଣେ ଶାଳରେ ଚୋରଙ୍କ ଭୟ । ଟିକିଏ ମୁହଁ ବୁଲେଇ ଦେଲେ ଶାଳରୁ ମରିଗୁଡ଼ କି କଣ୍ଠା ଆଖୁ ହରଣଚାଲ୍ ହୋଇଯିବ ।

ଘନ ଲେଙ୍କାର ଘର ପୁରୁଣା ବରୁଡ଼ା ଗାଁରେ ଥିଲା । ଏଇ କେତେ ବର୍ଷ ତଳେ ସେ ତା'ର ପୁରୁଣା ଭାଇଆଳି ଘର ଛାଡ଼ି ନୂଆ-ସାହି ପାଖେ ଖଣ୍ଡେ ଜାଗାନେଇ ଘର ତୋଳି ପିଲପିଲି ଧରି ସେଇ-ଠାରେ ରହି ଆସୁଛି । ତା'ଘର ସାମ୍ନାରେ ପଞ୍ଚାୟତ ରାସ୍ତା । ରାସ୍ତା ତଳକୁ ପୋଖରୀ । ଘର ଠାରୁ ଖଣ୍ଡେ ଦୂରରେ ଆଖୁକିଆରି ଆଉ ଆଖୁ ଶାଳ । ତା' ଘରକୁ ଲାଗି ତା' ଦାଦା ଝିଅ ଭଉଣୀ ହେମର ଘର । ହେମ ପ୍ରାୟ କୋଡ଼ିଏ କି ବାଇଶି ବର୍ଷ ତଳେ ରଣପୁର ଥାନା 'ଅଞ୍ଚଳର ବିନୋଦପଡ଼ା ଗାଁରେ ଲୋକନାଥ ନାଏକଙ୍କୁ ବାହା ହୋଇଥିଲା । ବିନୋଦପଡ଼ାରେ କିଛି ଦିନ ଘର ସଂସାର କଲାପରେ ସେ ସ୍ୱାମୀ ପିଲା-ମାନଙ୍କୁ ଧରି ତା' ବାପ ଘର ଗାଁକୁ ପଳାଇ ଆସିଥିଲା । ବାପ ଶଙ୍କର ଲେଙ୍କା ଜ୍ୱାଇଁ ଝିଅର ରହିବା ପାଇଁ ନୂଆସାହି ପାଖେ ଜମି କିଣି ଘର କରି ଦେଇଥିଲେ । ସେଇ ଦିନରୁ ହେମ ତା' ସ୍ୱାମୀ ଲୋକନାଥ, ପୁଅ କବିରାଜ, ସମସ୍ତେ ସେଇ ଘରେ ରହି ଆସୁଛନ୍ତି । ତାଙ୍କ ରହିବା ପରେ ଘନ ଲେଙ୍କା ଆସି ଘର କରି ତାଙ୍କର ପଡ଼ୋଶୀ ହେଲେ ।

୧୫ । ୩ । ୮୭ ସକାଳ । ଘନ ଲେଙ୍କା ବଳଦ ଦୁଇଟି ଯୋଚି ଆଖୁ ଶାଳରେ ଆଖୁ ପେଡ଼ୁଥାଏ । ଘର ପାଖରୁ ତା' ସ୍ତ୍ରୀ ପ୍ରମିଳା ଆଉ ହେମର ପାଟି ଶୁଣାଗଲା । ଘର ଆଗରେ ଦୁଇଜଣ କଳି କରୁ-ଥାନ୍ତି । ସେଦିନ ସକାଳୁ ସକାଳୁ ଘନର ଗୋଟେ ପୋଡ଼ ହେମର ବାଇଗଣ କିଆରିରେ ପଶିଯାଇ ତା'ର ବାଇଗଣ ଗଛ କେତେଟା ଖାଇ ଦେଲା । ହେମ ଘର ଭିତରୁ ପୋଡ଼ର ବାଇଗଣ କିଆରିରେ ଗଛ ଖାଇବା ଶୁଣିପାରି ଘର ପଛପଟକୁ ଯାଇ ଦେଖେତ ତା' ବାଇଗଣ କିଆରିରେ ଘନର ପୋଡ଼ । ରାଗରେ ସେ ନିଆଁ ହୋଇ ଘନକୁ ଗାଳି-ଦେବାରେ ଲାଗିଲା । ତା' ଗାଳିଦେବା ଶୁଣି ଘନ ସ୍ତ୍ରୀ ପ୍ରମିଳା ମଧ୍ୟ ଘରୁ ବାହାରି ପଡ଼ିଲା । ଦୁଇ ଜଣ ସ୍ତ୍ରୀଙ୍କ ମଧ୍ୟରେ କଳି ଘମାଘୋଟ ଲାଗିଗଲା ବେଳେ ଆଖୁଶାଳରୁ ଘନ ଗଣ୍ଡଗୋଳ ଶୁଣିପାରି ହାତରେ ଗୋଟେ ଭାଲଧରି ତା' ଘର ପାଖେ ପହଞ୍ଚି ଗଲା । ତା' ପୂର୍ବରୁ ହେମର ସ୍ୱାମୀ ଲୋକନାଥ ମଧ୍ୟ ପହଞ୍ଚି ଯାଇଥାଏ । ଲୋକନାଥକୁ ଦେଖି ଘନ ଭାଲର ବେଣ୍ଟରେ ତାକୁ ବାଡ଼େଇବାରେ ଲାଗିଲା । ଲୋକନାଥକୁ ବାଡ଼େଇବା ଦେଖି ହେମ ଘନପାଖକୁ ଗଲାବେଳେ ଘନ ହେମକୁ ଭାଲ ଦେହରେ ଭୂଷିଦେଲା ।

ଭାଲମାଡ଼ରେ ହେମ ତା' ଘର ସାମ୍ନାବନ୍ଧ ଉପରେ ଢଳି ପଡ଼ିଲା । ଏଣେ ଲୋକନାଥ ଘନର ବାଡ଼ିଆ ବାଡ଼ି ହୋଇ ପୋଖରୀ ଭିତରକୁ ପଶି ପୋଖରୀ ମଧ୍ୟରେ ଗଡ଼ିଆ ଛଡ଼ିଆ ହେଉଥାନ୍ତି ।

ଏମାନଙ୍କ କଳିଗୋଳ ଦେଖି ଗାଁ ପାଖ ବିଲରୁ ମଧ୍ୟ ବହୁ ଲୋକ ଜମାହୋଇ ସେମାନଙ୍କୁ ଏଇ ଗଣ୍ଡଗୋଳରୁ ନିବୃତ୍ତ ହେବାପାଇଁ ଚେଷ୍ଟା କରୁଥାନ୍ତି ମାତ୍ର ଶୁଣୁଚି କିଏ ? ରାଗ ମଣିଷକୁ ନଷ୍ଟ କରେ । ଗୋଟେ ଦିଇଟା ବାଇଗଣ ଗଛ ଲାଗି ଭାଇ-ଭଉଣୀ, ଶଳା-ଭିଣୋଇ ମଧ୍ୟରେ ବାଡ଼ିଆ ବାଡ଼ି, ଖଣ୍ଡ ପ୍ରଳୟ । ସେମାନଙ୍କ ପାଟିଗୁଣ୍ଡ ମଧ୍ୟରେ ଦେଖଣା-ହାରି ଲୋକମାନେ ଦେଖିଲେ ହେମ ତା' ଘର ସାମ୍ନାରେ ରକ୍ତରେ

ଜୁଡ଼ୁବୁଡ଼ୁ ହୋଇ ଜୀବନ ସଙ୍ଗେ ଲଢ଼େଇ କରୁଥାଏ । ତା' ତଳପେଟରେ ଭାଲି ମାଡ଼ ।

ସଙ୍ଗେ ସଙ୍ଗେ ତା' ସ୍ୱାମୀ ଲୋକନାଥ, ପୁଅ କବିରାଜ ତାକୁ ପଣ୍ଡୁସର ଡାକ୍ତରଖାନାକୁ ନେବାପାଇଁ ଆୟୋଜନ କଲେ । ଏଇ ସମୟକୁ ହେମର ବାପ ଶଙ୍କର ଲେଙ୍କା ସେ ମଧ୍ୟ ଆସି ଘଟଣା ସ୍ଥଳରେ ପହଞ୍ଚି ଯାଇଥାନ୍ତି । ଗାଁ ଭିତରେ ତ ଘର, ଖବର ସଙ୍ଗେ ସଙ୍ଗେ ପହଞ୍ଚିଗଲା । ସମସ୍ତେ ହେମକୁ ଧରି ପଣ୍ଡୁସର ଡାକ୍ତରଖାନା ଆଡ଼େ ଚାଲିଲେ ।

ବରୁଡ଼ା ଠାରୁ ପଣ୍ଡୁସର ତିନି ଚାରି କିଲୋମିଟର ବାଟ । କୌଣସିମତେ ସେମାନେ ଗାଁରୁ ନେଲାବେଳେ ହେମ କେବଳ କହୁଥାଏ ଘନ ମୋତେ ଭୁଷିଦେଲା, ମୋ ପିଲା କବିଲାଙ୍କୁ ଦେଖିବ । ସେମାନେ ପଣ୍ଡୁସର ଡାକ୍ତର ଖାନାରେ ପହଞ୍ଚିଲେ । ପଣ୍ଡୁସର ଡାକ୍ତରଖାନାରେ ରୋଗୀକୁ ଯଥେଷ୍ଟ ଚିକିତ୍ସା କରିବାକୁ ସୁବିଧା ନଥିବାରୁ, ସଙ୍ଗେ ସଙ୍ଗେ ନୟାଗଡ଼ ବଡ଼ ଡାକ୍ତରଖାନାକୁ ନେଇଗଲେ । ନବାପାଇଁ ଡାକ୍ତର ଶଙ୍କର ଲେଙ୍କାକୁ କହିଥିଲେ । ସେମାନେ ପଣ୍ଡୁସର ପାଖରୁ ଗୋଟେ ଗାଡ଼ି ଯୋଗାଡ଼ କରି ହେମକୁ ନୟାଗଡ଼ ଡାକ୍ତରଖାନାକୁ ନେଲା ବାଟରେ ତା'ର ମୃତ୍ୟୁ ଘଟିଲା । ତା'ର ମୃତ୍ୟୁପରେ, ବାପ ଶଙ୍କର ଲେଙ୍କା ନୟାଗଡ଼ ଥାନାରେ ଘନ ଲେଙ୍କା ନାମରେ ଲିଖିତ ରିପୋର୍ଟ ଦେଲେ ଏବଂ ତାଙ୍କ ରିପୋର୍ଟ ଉପରେ ନୟାଗଡ଼ ଥାନାରେ ଇଣ୍ଡିଆନ୍ ପେନାଲ କୋର୍ଡ୍‌ର ୩୦୨ । ୩୨୩ । ୩୨୫ ଦଫାରେ କେସ୍ ରୁଜୁ ହେଲା । ଥାନାର ଅଫିସର ଇନ୍‌ଚାର୍ଜ ଶ୍ରୀ ମହାନ୍ତି ଏହାର ତଦନ୍ତଭାର ଗ୍ରହଣ କଲେ ।

ତଦନ୍ତକାରୀ ଅଫିସର, ମୃତା ହେମର ଶରୀରକୁ ଡାକ୍ତର ମାଇନା ପାଇଁ ପଠାଇ ଦେଲାପରେ, ସେ ହତ୍ୟାକାରୀ ଘନ ଲେଙ୍କାକୁ ଧରିବା ପାଇଁ ବରୁଡ଼ ଗ୍ରାମକୁ ଯାଇଥିଲେ । ଘଟଣା ସ୍ଥଳରେ ପହଞ୍ଚି

ତଦନ୍ତ କଲାବେଳେ ତଦନ୍ତକାରୀ ଅଫିସର ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି-ଥିଲେ, ମାତ୍ର ହତ୍ୟାକାରୀଙ୍କୁ ଗିରଫ କରିବା ପାଇଁ ପାଇନଥିଲେ ।

ହତ୍ୟାକାରୀ ହେମର ମୃତ୍ୟୁ ଖବର ପାଇ ଗାଁ ଗୁଡ଼ ପଳାଇ ଯାଇଥିଲା । ମାତ୍ର କେତେଦିନ ହତ୍ୟାକାରୀ ପୁଲିସ ଆଖିରେ ଧୂଳି ଦେଇ ବୁଲିପାରିବ ? ଅଳ୍ପ ଦିନପରେ ସେ ଏଇ ହତ୍ୟାମକଦ୍ଦମାରେ ଆରେଷ୍ଟ-ହୋଇ କୋର୍ଟକୁ ଗ୍ଲାଣ ହୋଇଥିଲା । ତଦନ୍ତକାରୀ ଅଫିସରଙ୍କ ଆଗରେ ହତ୍ୟାକାରୀ ପ୍ରକାଶ କରିଥିଲା ଯେ, ସେ ହେମକୁ ଭାଲିଦ୍ୱାରା ଆଘାତ କରିନାହାନ୍ତି । ହେମ ଗୋଟିଏ ଅଣ୍ଡିରା ମଇଁଷି ଶିଙ୍ଗ ଦ୍ୱାରା ଆଘାତ ପାଇଛି ବରଂ ତାକୁ ହେମର ସ୍ୱାମୀ ଏବଂ ପୁଅ ମିଶି ମାଡ଼ ଦେଇଛନ୍ତି, ଆଘାତ କରିଛନ୍ତି ।

ତଦନ୍ତକାରୀ ଅଫିସର ମଧ୍ୟ ପଶୁଡାକ୍ତରଙ୍କୁ ଏଇ ବିଷୟରେ ଜାଣିବା ପାଇଁ ତାଙ୍କ ସାକ୍ଷ୍ୟ ନେଇଥିଲେ । ପଶୁଡାକ୍ତର କହିଲେ ଯେ ହେମର ତଳପେଟରେ ଲଗିଥିବା ଆଘାତ ମଇଁଷି ଶିଙ୍ଗରେ ହେବା ସମ୍ଭବ ନୁହେଁ ।

ସମସ୍ତ ସାକ୍ଷ୍ୟ ପ୍ରମାଣ ଗ୍ରହଣ କଲାପରେ, ତଦନ୍ତକାରୀ ଅଫିସର ଘନଲେଙ୍କା ନାମରେ ୩୦୨ । ୩୨୩ । ୩୨୫ ଦଫାରେ ଚାର୍ଜସିଟ୍ ଦେଇଥିଲେ ।

ଏହି ହତ୍ୟା ମକଦ୍ଦମା ପୁରୀର ମାନ୍ୟବର ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ବିଚାର ପାଇଁ ପଡ଼ିଥିଲା । ବିଚାର ସମୟରେ ହତ୍ୟାକାରୀ ଘନଶ୍ୟାମ ନିର୍ଦ୍ଦୋଷ ବୋଲି କହିଥିଲା । ବିଚାରପତି ସମସ୍ତ ସାକ୍ଷ୍ୟ, ପ୍ରମାଣ ଗ୍ରହଣ କଲାପରେ; ଘନଲେଙ୍କାଙ୍କୁ ହେମର ହତ୍ୟାକାରୀ ଭାବେ ସାବ୍ୟସ୍ତ କରି ଘନଙ୍କୁ ଆଜୀବନ କାରାଦଣ୍ଡ ଭୋଗ କରିବା ପାଇଁ ଆଦେଶ ଦେଇଥିଲେ ।

ଗୋଟିଏ ଶ୍ରେଷ୍ଠ ଘଟଣାକୁ କେନ୍ଦ୍ରକରି ଏକ ବିଶିଷ୍ଟ ମାନବ ଜୀବନର ଅବସାନ ଘଟିଥିଲା । ଏବଂ ପରେ ପରେ ଆଉ ଜଣେ ସେଇ ଦୋଷ ପାଇଁ ଆଜୀବନ କାରାଦଣ୍ଡ ଭୋଗ କରିବାକୁ ପଡ଼ିଲା ।

ପ୍ରତ୍ୟେକ ମଣିଷ ଯଦି ରାଗ, ଦ୍ୱେଷ ଆଉ ହିଂସାକୁ ଉପଯୁକ୍ତ ଭାବେ ପର୍ଯ୍ୟାଲୋଚନା କରନ୍ତେ, ତାହେଲେ ବର୍ତ୍ତମାନ ସମାଜର ଅନେକ ଅସୁବିଧା ଦୂର ହୋଇ ପାରନ୍ତା ।



## ଟ୍ରିପଲ୍ ମର୍ଡର୍



ମଧ୍ୟ ଆଷାଢ଼ ଘନକୃଷ୍ଣ ମେଘାଚ୍ଛନ୍ନ ରାତ୍ରିର ନିସ୍ତବ୍ଧ ପ୍ରହର । ବର୍ଷଣମୁଖର ରାତ୍ରିର ନିସ୍ତବ୍ଧତାକୁ ଭଙ୍ଗ କରି ମଝିରେ ମଝିରେ ଶ୍ୱାନ, ଶୃଗାଳଙ୍କର କରୁଣ ଚିତ୍କାର । ଥଣ୍ଡା ପବନ ଆଉ ଟିପ୍ ଟିପ୍ ବର୍ଷା ସଙ୍ଗେ ସଦର ନଦୀ ତଟ, ମଶାଣୀ ତୋଠା ପାଖୁ ଭାସି ଆସୁଥାଏ ଭୁହାକୁ ଭୁହା ବର୍ଷା ସାଙ୍ଗକୁ ଘଡ଼ଘଡ଼ି ଶବ୍ଦ ଆଉ ବିଜୁଳୀର ଚମକ ପଥଭ୍ରାନ୍ତ ପଥିକ ମନରେ ଭୟ ସଞ୍ଚାର କରୁଥାଏ । ବିରାଟ ନୀରବତା ଭିତରେ ପ୍ରକୃତିରାଣୀ ପ୍ରକମ୍ପିତ ।

ଜଗନ୍ନାଥ ସଡ଼କର ଅନତି ଦୂରରେ ଛୋଟ ଗ୍ରାମଟିଏ । ନାଁଟି ତା ସୁବଳପୁର । ଆମ୍ବ, ପୋଲଙ୍ଗ, ନଡ଼ିଆବଣ ଭିତରେ ଏହି ସୁବଳପୁର ଗ୍ରାମର ଛୋଟ କେଳା ବସ୍ତି । ବସ୍ତି ମଧ୍ୟରେ ସାତ ଆଠଟି ପରିବାର; କେଉଁ ଯୁଗରୁ ଏହି ଗାଁର ପୋଲଙ୍ଗ ଆମ୍ବ ତୋଠାରେ ରହି ଆସିଛନ୍ତି ତାର ଇତିହାସ କେହି କହି ପାରିବନି । ସମସ୍ତେ ଶ୍ରମଜୀବୀ । କୃଷିବାସ କରି ଜୀବିକା ନିର୍ବାହ କରନ୍ତି । ଦିନଯାକର ଅକ୍ଲାନ୍ତ ପରିଶ୍ରମ ପରେ ରାତ୍ରିର ନିସ୍ତବ୍ଧତା ମଧ୍ୟରେ ସମସ୍ତେ ହଜାଇ ଦିଅନ୍ତି ନିଜକୁ ସେଇ ରଜନୀ ରାଣୀର କୋଳରେ । ସେଦିନ ଥିଲା ଜୁଲାଇ ମାସ ୧୭ ତାରିଖ ୧୯୮୭ ମସିହାର ବର୍ଷଣ ମୁଖର ରାତ୍ରି ।

ରାତି ଅଧରୁ ଗଡ଼ିଯାଇଥାଏ । ବୁଢ଼ା ବଂଶୀ ପ୍ରଧାନ ବୟସର ଭାରରେ ଭାଙ୍ଗି ପଡ଼ିନଥିଲେ ମଧ୍ୟ ବର୍ଷା ଆଉ ଘଡ଼ଘଡ଼ି ଶବ୍ଦରେ

ଶୋଇପାରି ନଥାଏ । ହଠାତ୍ ସେ ଶୁଣିପାରିଲେ ତାଙ୍କ ପଡ଼ୋଶୀ ରଘୁ ଘରୁ ଏକ କରୁଣ ଚିତ୍କାର ଭାସିଆସୁଛି । ହଠାତ୍ ସେ ତାଙ୍କ ବିଛଣା ଉପରେ ବସିପଡ଼ିଲେ । ନିଦୁଆ ଆଖି ଦୁଇଟିକୁ ଦୁଇହାତ ପାପୁଲିରେ ମଳିଦେଇ, ପୁଣି ସେଇ ପଡ଼ୋଶୀ ଘରଆଡ଼୍ ଭାସିଆସୁଥିବା କ୍ଷୀଣସ୍ୱର ଆଡ଼େ କାନ ଦେଲେ । ପଡ଼ୋଶୀ ରଘୁ ଘରେ ପିଲମାନଙ୍କ ଆର୍ତ୍ତଚିତ୍କାର, ଦୁଲ୍‌ଦାଲ୍ ମାଡ଼ ଦେବାର ଶବ୍ଦ । ସେ ସଙ୍ଗେ ସଙ୍ଗେ ତାଙ୍କ ପୁଅ ରଘୁକୁ ଡାକ ପକାଇ ପଡ଼ୋଶୀ ରଘୁଆ ଘରକୁ ଯାଇ ଘଟଣା ଦେଖିବାକୁ କହିଥିଲେ । ରଘୁ ଯୁବକ । ଅନ୍ଧାର ରାତିର ଘଡ଼ଘଡ଼ି ବଜ୍ରପାତ ତା' ମନରେ ଭୟ ସଞ୍ଚାର କରୁନଥିଲା । ସେ ସଙ୍ଗେ ସଙ୍ଗେ ରଘୁଆ ଘରଆଡ଼େ ଯାଇଥିଲା । ମାତ୍ର ଛିନ୍ନାଦ୍ଧନ ଡଳେ ରଘୁଆ ପ୍ରଧାନ ଗୋଟେ ଶ୍ରେଷ୍ଠିଆ ଘର ଛଆରି କରି ଗୃହ ପ୍ରବେଶ କରିଥାଏ । ଘରେ ତାର ଯୁବତୀ ସ୍ତ୍ରୀ ସମ୍ବାରୀ, ଶ୍ରେଷ୍ଠ ଝିଅ ମିନା, ସୋନା ଆଉ ପୁଅ ଡମ୍ବରୁ । ରଘୁ ରଘୁଆ ଘର ପାଖକୁ ଯାଇ ଦେଖେ ତ ତା' ଘର ଭିତରପଟୁ ବନ୍ଦ ହୋଇଥାଏ । ମାତ୍ର ଘର ଭିତରେ ଶ୍ରେଷ୍ଠ ଝିଅ ମିନା କରୁଣ ଚିତ୍କାର କରୁଥାଏ । ଅନ୍ଧକାର ଯୋଗୁ ଘର ଭିତରେ ସେ କିଛି ଦେଖିପାରୁ ନଥିଲେ ମଧ୍ୟ ମିନା ଉପରେ ତାର ବାପ ରଘୁଆ ମାଡ଼ ମାରୁଥିବା ଶବ୍ଦ ଶୁଣିପାରୁଥିଲା । ସେ ବାହାର ପଟୁ ମିନା ନାଁ ଧରି ଡାକିଲାମାତ୍ରେ ମିନା ଭିତର ପଟୁ ତାକୁ ତା' ବାପ ରଘୁଆ ମାଡ଼ ମାରୁଛି ବୋଲି କହିଥିଲା । ସେ ମିନାକୁ ଘର କବାଟ ଖୋଲିବାକୁ କହିବାରୁ ମିନା ସେଇ ଅନ୍ଧାର ଭିତରେ ଘର କବାଟ ଖୋଲି ଦେଲାବେଳେ ତାର ବାପ ରଘୁଆ ତା ମୁଣ୍ଡରେ ଗୋଟେ ଶାବଳରେ ପ୍ରହାର ଉପରେ ପ୍ରହାର ଦେବାରେ ମିନା ଆଖି ପିଛୁଳାକେ ରଘୁର ଆଖି ସାମ୍ନାରେ ଦୁଆର ମୁହଁ ପାଖେ ପଡ଼ି ମୃତ୍ୟୁବରଣ କଲା ।

ରଘୁ ପ୍ରଧାନ ମିନା ବାପର ଏ ପ୍ରକାର କାର୍ଯ୍ୟ ଦେଖି ତାକୁ "ତୁ ଝିଅଟାକୁ ମାରିଦେଲୁ ।" କହିବାବେଳେ ରଘୁଆ ଘର ଭିତରୁ ସେ ଧରିଥିବା ଶାବଳ ଧରି ତାକୁ ମଧ୍ୟ ମାରିବାକୁ ଗୋଡ଼ାଇଲା । ପ୍ରାଣ ବିକଳରେ ରଘୁ ଦଉଡ଼ିବାକୁ ଆରମ୍ଭ କଲା । ମାତ୍ର ସେ ବେଶିବାଟ ଯାଇ ପାରିଲା ନାହିଁ । ଘାତକର ଶାବଳ ମାଡ଼ରେ ସେ ଅଳ୍ପ ଦୂରରେ କ୍ଷତ

କ୍ଷତ ହୋଇ ପଡ଼ିଗଲା । ସେଇ ସମୟରେ ରଘୁର ବାପ ଏବଂ ଗାଁର ଅନ୍ୟମାନେ ଦଉଡ଼ି ଆସିଲେ । ସେତେବେଳକୁ ଘାତକ ରଘୁଆ ତା' ଘର ଭିତରକୁ ପଶି ଯାଇଥାଏ । ଭୟରେ ଗାଁ ଲୋକମାନେ ରଘୁଆକୁ ଧରିବାକୁ ସାହସ କରିନଥିଲେ । ସେମାନେ ସାଙ୍ଗେ ସାଙ୍ଗେ ନିକଟସ୍ଥ ସାତଶଙ୍ଖ ଫାଣ୍ଡିରେ ଏଇ ମର୍ମନ୍ତୁଦ ଘଟଣାର ଖବର ଦେଇଥିଲେ ।

ସାତଶଙ୍ଖ ଫାଣ୍ଡିର ଏ. ଏସ୍. ଆଇ. ଭରତ ପ୍ରଧାନ ଏପରି ଗୋଟିଏ ଅଘଟଣ ଖବର ପାଇବା ସଙ୍ଗେ ସଙ୍ଗେ ଖବର ନେଇ ଆସିଥିବା ଲୋକଙ୍କ ସଙ୍ଗେ ଘଟଣା ସ୍ଥଳକୁ ବାହାରି ଯାଇଥିଲେ । ଘଟଣା ସ୍ଥଳରେ ପହଞ୍ଚି ସେ ଦେଖିଲେ ଯେ, ରଘୁଆ ପ୍ରଧାନ ଘର ବାହାରେ ବହୁତ ଲୋକ ଠିଆ ହୋଇଥାନ୍ତି । ଭୟରେ କାହାରି ମୁହଁରୁ କଥା ବାହାରୁ ନଥାଏ । ଏ.ଏସ୍.ଆଇ ସାଙ୍ଗରେ ନେଇଥିବା ଟର୍ଚ୍ଚଲାଇଟ୍ ଆଲୁଅ ଘର ଭିତରକୁ ପକାଇଥିଲେ । ସେ ଟର୍ଚ୍ଚଲାଇଟ୍ ଆଲୁଅରେ ଯାହା ଦେଖିଲେ ତାଙ୍କର ଏବଂ ତାଙ୍କ ପାଖେ ଠିଆ ହୋଇଥିବା ସମସ୍ତ ଲୋକମାନଙ୍କର ରୁମମୂଳ ଟାଙ୍କୁଶି ଉଠିଲା । ଘର ଭିତରେ ରଘୁଆର ସ୍ତ୍ରୀ ସମ୍ପାଶି, ବାର ବର୍ଷର ଝିଅ ମିନି, ପୁଅ ଡମ୍ବରୁ ସମସ୍ତେ ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ମରି ପଡ଼ିଥାନ୍ତି । ଆଉ ଘର ଭିତରେ ଘାତକ ରଘୁଆ ହାତରେ ଶାବଳ ଧରି ଠିଆ ହୋଇଥାଏ ।

ଘାତକ ରଘୁଆର ଯମଦୂତ ରୂପ ଦେଖି ଉପସ୍ଥିତ ଦର୍ଶକମାନେ ଭୟରେ ଥରିବାକୁ ଲାଗିଲେ । ଟର୍ଚ୍ଚ ଆଲୁଅରେ ସେମାନେ ଦେଖୁଥାନ୍ତି, ରଘୁଆ ରକ୍ତାକ୍ତ ଶାବଳ ହାତରେ ଧରି ଘର ଭିତରେ ଏପଟ ସେପଟ ହେଉଥାଏ । ତାର ରୂପ ସେତେବେଳେ ଯେ ଦେଖିଥିଲେ ସାମ୍ନାରେ ସ୍ୱୟଂ ଯମ ଦେବତା ଉପସ୍ଥିତ ହୋଇଥିଲେ ମଧ୍ୟ ଏତେ ଭୟ କରି ନଥାନ୍ତେ । ଭୟରେ ଆସ୍ତେ ଆସ୍ତେ ଦର୍ଶକମାନେ ସ୍ଥାନ ପରିତ୍ୟାଗ କରି ପଳାଇବାକୁ ବାହାରିଲେ, କେତେକ ସେଇ ଅନ୍ଧାର ମଧ୍ୟରେ ପଳାଇ ଯାଇଥିଲେ । ଫାଣ୍ଡି ଏ.ଏସ୍.ଆଇଙ୍କ ମନରେ ଗୋଟିଏ ଚିନ୍ତା, କପରି

ମୁଦାଲୀ ରଘୁଆକୁ ଧରିବେ । ଯଦି ସେ ଏବେ ତାକୁ ନ ଧରନ୍ତି ତେବେ ବର୍ଷା ରାତିରେ ଘନ ଅନ୍ଧକାର ମଧ୍ୟରେ କେଉଁଆଡ଼େ ପଳାୟନ କରିପାରେ । ମନରେ ସାହସ ବାନ୍ଧି ସେ କେତେ ଜଣ ଯୁବକଙ୍କୁ ସାହାଯ୍ୟ ମାଗିଲେ । ମାତ୍ର କିଏ ବା କାହିଁକି ଇଚ୍ଛାକୃତ ଯମ ମୁହଁକୁ ବଳିପଡ଼ିବା ପାଇଁ ଆଗେଇ ଆସିବ । ମାତ୍ର ଏ.ଏସ୍.ଆଇ ଭରତ ପ୍ରଧାନଙ୍କ ପାଖେ ଥିଲି କର୍ତ୍ତବ୍ୟର ଆହ୍ୱାନ । ଅପରାଧୀକୁ ଧରିବାକୁ ପଡ଼ିବ । ଡେରିକଲେ ଅପରାଧୀ ଅନ୍ଧକାରର ସୁଯୋଗ ନେଇ ପଳାୟନ କରିପାରେ ।

ମନରେ ସାହସବାନ୍ଧି ସେ ହାତରେ ଟର୍ଚ୍ଚ ଧରି ଆଗେଇଗଲେ । ପୁଲିସ୍ ଡ୍ରେସ୍‌ରେ ଏ.ଏସ୍.ଆଇକୁ ଦେଖି ଅପରାଧୀ ରଘୁଆ ଘର ଭିତରେ ଥାଇ ଆହୁରି କ୍ଷୁବ୍ଧ ହୋଇଉଠିଲା । ତାର ଅସ୍ଥିର ପଦଚାରଣା ତାହାହିଁ ସୂଚାଇ ଦେଉଥାଏ । ପୁଲିସ୍ ଟ୍ରେନିଂ ପ୍ରାପ୍ତ ଏ.ଏସ୍.ଆଇ ଭରତ, ତାର ସମସ୍ତ କୌଶଳ ପ୍ରୟୋଗ କରି ଘର ମୁହଁରେ ପ୍ରବେଶ କଲାମାତ୍ରେ, ଅପରାଧୀ ସଙ୍ଗେ ସଙ୍ଗେ ମାରଣାସ୍ତ୍ର ଶାବଳ ଦ୍ୱାରା ଭରତଙ୍କ ମୁଣ୍ଡକୁ ଲକ୍ଷ୍ୟକରି ଏକ ପ୍ରହାର ଦେବାକୁ ଉଦ୍ୟତ ହେଲା । ଭରତ ନିଜର ବୁଦ୍ଧି ଆଉ ମନର ସ୍ଥିରସାମ୍ୟରେ ଉପସ୍ଥିତ ବିପଦବେଳେ ନିଜକୁ ରକ୍ଷା କରିବା ଫଳରେ, ଅପରାଧୀ ତାର ଲକ୍ଷ୍ୟ ହାସଲ କରିପାରିନଥିଲା ଏବଂ ସେଇ ସୁଯୋଗରେ ଭରତ ଅପରାଧୀ ହାତରେ ଥିବା ମାରଣାସ୍ତ୍ରକୁ ଜବତ କରି ନେଇଥିଲେ । ଶାବଳକୁ ଅପରାଧୀ ରଘୁଆ ହାତରୁ ନେଇ-ଗଲା ପରେ, ସେ ସଙ୍ଗେ ସଙ୍ଗେ ତାକୁ ସେଇ ଘର ଭିତରେ ମାଡ଼ିବସି ଅକ୍ତିଆର କରି ନେଇଥିଲେ । ବାହାରେ ଠିଆ ହୋଇଥିବା ଦର୍ଶକମାନେ ତାଙ୍କୁ ସାହାଯ୍ୟ କରିଥିଲେ ।

ଘଟଣା ବିଷୟରେ ଖବର ପାଇ, ପିପିଲି ଥାନାର ଥାନା ଅଫିସର ମଧ୍ୟ ସେଇ ରାତିରେ ଘଟଣାସ୍ଥଳରେ ପହଞ୍ଚିଥିଲେ । ଅପରାଧୀ ଧରା ପଡ଼ିଯିବା ପରେ, ସମସ୍ତ ଦର୍ଶକ ଏ.ଏସ୍.ଆଇକୁ ଧନ୍ୟବାଦ୍ ଦେଇଥିଲେ । ଯଦି ସେ ରାତିରେ ଅପରାଧୀ ଧରା ହୋଇନଥାନ୍ତା ଏବଂ ସେ ଯଦି ବାହାରକୁ ଖସି ଯାଇଥାନ୍ତା, ତାହେଲେ ଅନ୍ୟ ନିରୀହ ଲୋକ-

ମଧ୍ୟ ସେଇ ବର୍ଷ ସେମୁଖର ଅନ୍ଧାର ଘର୍ଷରେ ତାର ପାଗଳାମୀର ଶିକାର ହୋଇଥାନ୍ତେ ।

ପିପିଲି ଅଫିସର ଇନ୍‌ଚାର୍ଜ ଘଟଣା ସ୍ଥଳରେ ପହଞ୍ଚିଲା ପରେ ବଂଶୀ ପ୍ରଧାନଙ୍କ ପୁଅ ରଘୁ ପ୍ରଧାନ ଯେ କି ପ୍ରଥମେ ସମସ୍ତ ଘଟଣା ଦେଖିଥିଲେ ଏବଂ ଅପରାଧୀର ଆକ୍ରମଣରେ କ୍ଷତବିକ୍ଷତ ହୋଇଥିଲେ ସେ ତାଙ୍କ ଆଗରେ ପ୍ରାଥମିକ ରିପୋର୍ଟ ପ୍ରଦାନ କରି କହିଥିଲେ ଯେ, "ରାତି ପ୍ରାୟ ୧୨ ଘଣ୍ଟା ସମୟରେ ମୋର ବାପା ବଂଶୀ ପ୍ରଧାନ ମୋତେ ନିଦରୁ ଉଠାଇ କହିଲେ ଯେ, ରଘୁଆ ଘରେ ହୁଲ୍‌ହାଲ୍ ଶବ୍ଦ ଶୁଣାଯାଉଛି । ମୁଁ ମଧ୍ୟ ଶବ୍ଦ ଶୁଣି ଘଟଣା ଜାଣିବା ପାଇଁ ରଘୁଆ ଘରକୁ ଗଲି । ମୋର ବାପା ମୋ ପଛେ ପଛେ ଗଲେ । ମୁଁ ଯାଇ ଦେଖିଲି ରଘୁଆ ଘର ଭିତରପଟୁ ବନ୍ଦ ଅଛି ଓ ରଘୁଆର ଝିଅ ମିନି ଘର ଭିତରେ ବ୍ୟାକୁଳ ହୋଇ କାନ୍ଦୁଥିବାର ଶୁଣିଲି । ମୁଁ ତାକୁ ବାଦା କାହିଁକି କାନ୍ଦୁଛୁ ବୋଲି ବାହାରୁ ଡାକିବାରେ ତା ଝିଅ ମିନି ମୋ ପାଟିଶୁଣି କବାଟ ଖୋଲିଦେଲା । କିନ୍ତୁ ମୁଦାଲି ରଘୁଆ ମିନିର ହାତକୁ ଓ ମୁଣ୍ଡକୁ ଯେ ଧରିଥିବା ଶାବଳରେ ବାଡେ଼ଇ ଦେବାରୁ ସେ କେଁ କରି ଘର ଭିତରେ ତଳେ ପଡ଼ିଗଲା । ମୁଁ ରଘୁଆକୁ ଝିଅକୁ ବାଡେ଼ଇ ମାରିଦେଲୁ ବୋଲି କହିବାରୁ ସେ ରାଗିଯାଇ ଧରିଥିବା ଶାବଳ ଧରି ମୋତେ ମାରିବାକୁ ଗୋଡ଼ାଇଲା । ଇତ୍ୟାଦି......"

ପିପିଲି ଥାନାବାବୁ ଏଇ ଘଟଣାର ଏତେଲା ନେଲାପରେ ମୁଦାଲି ରଘୁ ପ୍ରଧାନଙ୍କ ବିରୁଦ୍ଧରେ ହତ୍ୟା ମକଦ୍ଦମା ରୁଜୁ କରି ତାହାର ତଦନ୍ତ ଆରମ୍ଭ କରିଥିଲେ । ତଦନ୍ତ ସମୟରେ ଜଣା ପଡ଼ିଥିଲା ଯେ, ଏଇ ଘଟଣାର ବର୍ଷକ ପୂର୍ବରୁ ମୁଦାଲିର ମାନସିକ ବିକୃତି ଘଟିଥିବା ହେତୁ ସେ କଟକ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲା ଏବଂ ଡାକ୍ତରଙ୍କ ପ୍ରେସ୍‌କ୍ରିପ୍‌ସନ ଅନୁଯାୟୀ ଔଷଧ ବ୍ୟବହାର କରୁଥିଲା । ବର୍ଷକ ଭିତରେ ମୁଦାଲିର କୌଣସି ପ୍ରକାର ମାନସିକ ବିକୃତି ଦେଖା ଦେଇ ନ ଥିଲା । ସେ ଜଣେ ସୁସ୍ଥ ମଣିଷ ପରି ସବୁକାମ କରୁଥିଲା ।

ଘଟଣା ଦିନ ସନ୍ଧ୍ୟାରେ ମୁଦାଲି, ତାର ଦୈନନ୍ଦିନ କାର୍ଯ୍ୟ ସାରି ଘରକୁ ଫେରିଲା ପରେ, ସେକେଣ୍ଡ ସୋ ସିନେମା ଦେଖିବା ପାଇଁ ସେ ତାର ଦୁଇଜଣ ସାଙ୍ଗଙ୍କ ସହିତ ସାକ୍ଷୀଗୋପାଳ ସିନେମା ହଲରେ ସିନେମା ଦେଖିବାକୁ ଯାଇଥିଲା । ସିନେମା ଦେଖି ସେମାନେ ପ୍ରାୟ ରାତି ୧୧-୩୦ ମିନିଟ୍‌ରେ ଫେରିଲେ । ମୁଦାଲି ଘରକୁ ଗଲାପରେ, ତାର ସ୍ତ୍ରୀ ସମ୍ପାଗିକୁ ଖାଇବାକୁ ଦେବାପାଇଁ କହିଥିଲା ଓ ସ୍ତ୍ରୀ ସମ୍ପାଗି ତାକୁ ଖାଇବାକୁ ଦେଇଥିଲା । ଖାଇ ସାରିବା ପରେ ସମ୍ପାଗି ମୁଦାଲିକୁ ଔଷଧ ଖାଇବା ପାଇଁ ଔଷଧ ଆଣି ଦେଇଥିଲା । ଔଷଧ ଦେଖି ମୁଦାଲି ଔଷଧ ଖାଇବା ପାଇଁ ମନା କଲା, ମାତ୍ର ସମ୍ପାଗି ମୁଦାଲିକୁ ଔଷଧ ବ୍ୟବହାର କରିବା ପାଇଁ ବାଧ କରିଥିଲା । ଏହି ଘଟଣାକୁ କେନ୍ଦ୍ର କରି ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଝଗଡ଼ା ହେଲା ଏବଂ ସେଇ ଝଗଡ଼ା ମଧ୍ୟରେ ମୁଦାଲି ରାଗିଯାଇ ଘର ଭିତରେ ଥୁଆ ହୋଇଥିବା ଶାବଳ ଧରି ସମ୍ପାଗିକୁ ଆକ୍ରମଣ କରିଥିଲା । ଶାବଳ ମାଡ଼ରେ ସମ୍ପାଗି ରକ୍ତାକ୍ତ ହୋଇ ସେଇ ଘର ଭିତରେ ମୃତ୍ୟୁବରଣ କଲା । ମୃତ୍ୟୁ ପୂର୍ବରୁ ତାର କରୁଣ ଚିତ୍କାରରେ, ସେଇ ଘରେ ଶୋଇଥିବା ତାର ଝିଅ ମିନି ଆଉ ପୁଅ ଡମ୍ବରୁ ଉଠି ପଡ଼ିଥିଲେ । ସେମାନେ ଉଠିପଡ଼ିବାର ଦେଖି ମୁଦାଲି ସେମାନଙ୍କୁ ଶେଷ କରିଦେବା ପାଇଁ ଶାବଳ ଦ୍ୱାରା ଆକ୍ରମଣ କରିଥିଲା । ଶାବଳ ମାଡ଼ରେ ପୁଅ ଡମ୍ବରୁ ତାର ଶୋଇବା ଶେଯରେ ମୃତ୍ୟୁବରଣ କଲା ଆଉ ଝିଅ ମିନି ଜୀବନରକ୍ଷା କରିବାକୁ ଯାଇ କରୁଣ ଚିତ୍କାର ମଧ୍ୟରେ ମୃତ୍ୟୁବରଣ କଲା । ଘଣ୍ଟାକ ମଧ୍ୟରେ ନୃଶଂସ ପିତାର ପାଗଳାମି ଯୋଗୁ ତିନୋଟି ନିରୀହ ପ୍ରାଣୀ ଇହଧାମ ତ୍ୟାଗ କଲେ ।

ଘଟଣାର ସମ୍ପୂର୍ଣ୍ଣ ତଦନ୍ତ ପରେ ମୁଦାଲିଙ୍କୁ ପୁଲିସ ଚାର୍ଜସିଟ୍ କରି କୋର୍ଟକୁ ଚାଲାଣ କରିଥିଲେ । ଏହି ଟ୍ରିପଲ ମର୍ଡ଼ର କେସ୍‌ର ବିଚାର ପୁରୀ ଜିଲ୍ଲା ଜଜ୍‌ଙ୍କ ଅଦାଲତରେ ଆରମ୍ଭ ହୋଇଥିଲା । ମୁଦାଲି ରାଘୁ ପ୍ରଧାନର ଏଇ ମକଦ୍ଦମାର ବିଚାର ବେଳେ ସେ ନିର୍ଦ୍ଦୋଷୀ ଏବଂ ଏଇ ହତ୍ୟାକାଣ୍ଡ ବିଷୟରେ ସେ ଜାଣିନାହିଁ ବୋଲି ସମ୍ମାନୀୟ ବିଚାରପତିଙ୍କ ଆଗରେ କହିଥିଲା । ପରେ ପରେ ସେ ମଧ୍ୟ କହିଥିଲା ଯେ ତାର ମୁଣ୍ଡ

ଆଗରୁ ଖରାପ ଥିଲା ଏବଂ ସେ ତାର ସ୍ତ୍ରୀ, ଝିଅ ଓ ପୁଅ ହତ୍ୟା ବିଷୟରେ କିଛି ଜାଣେ ନାହିଁ । ମକଦ୍ଦମାର ବିଚାରବେଳେ ଘଟଣା ଦିନ ରାତିରେ ଉପସ୍ଥିତ ଥିବା ସାକ୍ଷୀମାନଙ୍କର ସାକ୍ଷୀ ପ୍ରମାଣ ଗ୍ରହଣ କରାଯାଇଥିଲା । ତଦନ୍ତକାରୀ ପୋଲିସ ଅଫିସର ସାତଶଙ୍କ ଫାଣ୍ଡିର ଏ.ଏସ୍.ଆଇ. ଭରତ ପ୍ରଧାନ ମଧ୍ୟ ଏଇ ହତ୍ୟାକାଣ୍ଡରେ ସାକ୍ଷ୍ୟ ଦେଇଥିଲେ । ବିଚାର ସମୟରେ ଅପରାଧୀକୁ ଚିକିତ୍ସା କରୁଥିବା ଡାକ୍ତର ପ୍ରଭୃତି ମଧ୍ୟ ସାକ୍ଷ୍ୟ ଦେଇଥିଲେ । ସମସ୍ତ ସାକ୍ଷ୍ୟ ଗ୍ରହଣ କଲାପରେ ବିଚାରପତି ମୁଦାଲ୍ ରଘୁ ପ୍ରଧାନକୁ ତାର ସ୍ତ୍ରୀ, ଝିଅ, ପୁଅକୁ ମାରିଥିବାର ଯଥେଷ୍ଟ ପ୍ରମାଣ ଥିବା ଏବଂ ମୁଦାଲ ତାର ସ୍ତ୍ରୀ ପିଲାମାନଙ୍କୁ ହତ୍ୟା କରିଥିବା ସମୟରେ ତାର ସମ୍ପୂର୍ଣ୍ଣ ମାନସିକ ବିକୃତି ଘଟିନଥିବା ଦୃଷ୍ଟିରୁ ତାକୁ ଆଜୀବନ କାରା-ଦଣ୍ଡରେ ଦଣ୍ଡିତ କରିଥିଲେ । ତା'ଛଡ଼ା ମୁଦାଲ୍ ରଘୁ ଏବଂ ଏ.ଏସ. ଆଇ.କୁ ମାଡ଼ ମାରିଥିବା ଅଭିଯୋଗରେ ମଧ୍ୟ ଦଣ୍ଡିତ ହୋଇଥିଲା ।

ମୁଦାଲ୍ ବଂଶରେ କେବଳ ଜଣେ ବଞ୍ଚିଗଲା । କାରଣ ସୋନା ତାର ସବା ସାନ ଝିଅ । ସେଦିନ ସେ ଘରେ ନଥିଲା, ଯାଇଥିଲା ମାମୁଁ ଘରକୁ ।



## ଧର୍ଷଣରୁ ଦଶବର୍ଷ ଜେଲ୍

ସେ ଦିନ ଥିଲା ନବବର୍ଷର ପ୍ରଥମ ଦିନ । ଊଣେଇଶଶହ ସତାଅଶୀ ମସିହା । କୋଣାର୍କରେ ପର୍ଯ୍ୟଟକ ମାନଙ୍କ ଭିଡ଼ ହିଁ ଆଖପାଖ ଅଞ୍ଚଳର ବାସିନ୍ଦାମାନଙ୍କ ମନରେ ଆନନ୍ଦ ଦିଏ । ସେମାନେ ଫେରିଯାଆନ୍ତି ସେଇ କୋଣାର୍କର ପୂର୍ବ ଇତିହାସ ମଧ୍ୟକୁ । ଦିନେ ଥିଲା ଏଇ କୋଣାର୍କ ସହର ଓଡ଼ିଆ ଜାତିର ଗୌରବ । କୋଣାର୍କ ପାଖ ପ୍ରାଚୀ ନଦୀ ମୁହାଣରୁ ଓଡ଼ିଆ ପୁଅ ବାଣିଜ୍ୟତରୀ ମେଲାଇ ଦେଇ ନୀଳ ସମୁଦ୍ର ବକ୍ଷରେ ଭାସିଯାଉଥିଲେ ନାନା ନାନା ସୁଦୂର ଜାଭା, ସୁମାତ୍ରା, ବାଲିଦେଶକୁ । ବହିଃବାଣିଜ୍ୟରେ କଳିଙ୍ଗ ମାନଙ୍କର ସମକକ୍ଷ ହେଲା ପରି ଜାତି ସେତେବେଳେ ଏ ଦେଶରେ କେହି ନଥିଲେ । ସମୃଦ୍ଧ ଥିଲା କୋଣାର୍କ ଅଞ୍ଚଳ । ପ୍ରସିଦ୍ଧ ଥିଲା ଏହାର ବଜାର ।

ଆଜି ସେଇ ଅଞ୍ଚଳରେ ବାଲିବନ୍ତ ଝାଉଁବଣ । ତଥାପି କୋଣାର୍କ ଅଛି ସାରା ପୃଥିବୀର ଶ୍ରେଷ୍ଠ ଭାସ୍କର୍ଯ୍ୟପୂର୍ଣ୍ଣ ମନ୍ଦିର ହିସାବରେ । ପୁଣି ଗଢ଼ି ଉଠୁଛି ଏହି ସହର, ପୁଣି ଆକୃଷ୍ଟ କରୁଛି ଶହ ଶହ ପର୍ଯ୍ୟଟକମାନଙ୍କୁ । ଏହି ଅଞ୍ଚଳର ବାସିନ୍ଦାମାନଙ୍କ ମନରେ ପୁଣି ନୂତନ ଆଶା ଆଉ ଉଦ୍ଦୀପନା ଦେଖା ଦେଇଛି । କୋଣାର୍କ ସନ୍ନିକଟ ଝାଉଁବଣ ଆଉ ବାଲିବନ୍ତ ଘେରା ଛୋଟ ଗାଁ "ରାଉଳ ପାଟଣା" । ଇତିହାସରେ ଏହି ଛୋଟ ଗାଁଟିର ନାଁ ନଥାଇ ପାରେ, ମାତ୍ର ମୂକ କୋଣାର୍କ ମନ୍ଦିର ଏଇ ଗାଁଟିକୁ ବହୁ ବର୍ଷରୁ ଦେଖିଆସିଛି । କୋଣାର୍କ ମନ୍ଦିରକୁ ଘେରି ବହୁ ଗାଁ ବହୁ "ପାଟଣା" ପାଟଣା ଗାଁ ମାନଙ୍କରେ ପ୍ରସିଦ୍ଧ ବ୍ୟବସାୟୀମାନେ ବାସ

କରୁଥିଲେ । ଗଡ଼୍‌ଲପାଟଣା ସେଇମାନଙ୍କ ମଧ୍ୟରୁ ଥିଲା ପ୍ରସିଦ୍ଧ ପୁରାତନ ଗାଁ । ଏବେ ଏଇ ଗାଁର ପ୍ରସିଦ୍ଧି ନଥାଇ ପାରେ, ମାତ୍ର ସୌନ୍ଦର୍ଯ୍ୟ ଅଛି । ପୂର୍ବ କୋଣରେ ସମୁଦ୍ରର ନୀଳ ଜଳରାଶି, ପଶ୍ଚିମରେ ମାଇଲ ମାଇଲ ଧରି କୃଷ୍ଣସାର ମୃଗ ପୂର୍ଣ୍ଣ ଝାଉଁବଣ, ମଝିରେ ମଝିରେ ତାଳ ଗଛର ନଭଶ୍ଚୁମ୍ବୀ ମୁଣ୍ଡ ଉପରେ ଶଙ୍ଖଚିଲର ବସା, ଗାଁ ମୁଣ୍ଡର ବାଲିବନ୍ତ ବେଶ୍ ସୁନ୍ଦର ଭାବ ପୁରାତନ କରି ଧରି ରଖିଛି ଏହି ଶ୍ରେଷ୍ଠ ଗାଁ ଟିକୁ । ଗାଁରେ ବିଭିନ୍ନ ପାଟକ ଲୋକଙ୍କର ଘର । ସମସ୍ତେ ସେଇ ଅଜଣା ଅଶୁଣା ଯୁଗରୁ ଭାଇ ଭାଇ ହୋଇ ଚଳିଆସିଛନ୍ତି । ଗୋଟିଏ ଗାଁ ଗୋଟିଏ ପ୍ରାଣ ଗଡ଼ୁଲ ପାଟଣା ।

ଗଡ଼ୁଲ ପାଟଣା ଘେଇ ସାହିର ବଶି କାଣ୍ଡିର ବୋହୂ 'କମଳା' । ବୟସ କୋଡ଼ିଏ କି ଏକୋଇଶି । ସ୍ୱାମୀ ବାବୁଲି କାଣ୍ଡି । ସମସ୍ତେ ମଜୁରି କରି ରୋଜଗାର କଲେ ପେଟ ପୋଷନ୍ତି ।

ଝାଉଁବଣକୁ ଜଙ୍ଗଲ ବିଭାଗ ନେଲା ଦିନରୁ ସେମାନଙ୍କୁ ଝାଉଁବଣରେ କାମ କରିବାକୁ ସୁବିଧା ମିଳିଥିଲା । ସେଦିନ କମଳାର ଶାଶୁ, ଶ୍ୱଶୁର, ସ୍ୱାମୀ ସମସ୍ତେ କାମ କରିବାକୁ ଝାଉଁ ଜଙ୍ଗଲକୁ ଚାଲିଯାଇଥିଲେ । ବୋହୂ କମଳା ଘରେ ଏକୁଟିଆ ଥାଏ । ନୂଆ ବର୍ଷର ସଂଧ୍ୟା ବୋଧେ ତା'ପାଇଁ ନୂତନତ୍ୱ କିଛି ଉପହାର ଦେବାକୁ ଆଗେଇ ଆସୁଥିଲା । ଶାଶୂ, ଶ୍ୱଶୁର କାମରୁ ଫେରିଲେ ସେମାନଙ୍କ ପାଇଁ ଭାତ ଘଡ଼ିଏକୁ ରୋଷେଇ କରି ଖାଇବାକୁ ଦେବ । କମଳା ଘରକୁ ଲାଗି କେଶବ କାଣ୍ଡିଙ୍କ ଘର । ବଶି, କେଶବ ଦୁଇ ଭାଇ । ବଶିର ଗୋଟିଏ ପୁଅ ବାବୁଲି । କେଶବର ଗୋଟିଏ ଝିଅ ଚମ୍ପି । କେଶବ ଚମ୍ପିକୁ ବାହା ଦେଇଥାଏ । କପିଳ କାଣ୍ଡି ସହିତ ଏବଂ କପିଳ କେଶବ ଘରେ ରହୁଥାଏ । ସମସ୍ତଙ୍କ ଘର ପାଖା ପାଖି । କମଳାର ଶୋଇଲା ଘରର ପୂର୍ବକୁ ଗୋଟିଏ ଶ୍ରେଷ୍ଠ ଗୁହାଳଘର । ଗୁହାଳ ଘରେ ଗାଈ, ବାଛୁରି, ବଳଦ ପଟେ । ସନ୍ଧ୍ୟାବେଳକୁ ଗାଈ, ବାଛୁରି ଝାଉଁ ବଣରୁ ଚରିବୁଲି ଘରକୁ ଫେରିଲେ । ସ୍ୱାମୀ ବାବୁଲି ସେ ପର୍ଯ୍ୟନ୍ତ କାମରୁ ଫେରି ନଥାଏ । ଗାଈ, ବଳଦ

ଫେରିବା ଦେଖି, କମଳା, ସେଦିନ ଗୁଡ଼ ଗୁହାଳ ଘରେ ଗାଈ ବାନ୍ଧିବାକୁ ଯାଇଥିଲା ।

ସନ୍ଧ୍ୟା ନଇଁ ନଇଁ ଯାଇଥାଏ । ଚାରିଆଡ଼େ ମୁହଁ ଅନ୍ଧାର । ଗୁହାଳ ଘର ଅନ୍ଧାରୁଆ ତଥାପି ଝାଟି ମାଟି ଦେଇ ସେ ଗୁହାଳ ଘର କମଳାର ଭଲ ଭାବେ ଚିହ୍ନା । ପାଖ ଆଖ ଘରେ କାମକୁ ନଯାଇ-ଥିବା ସ୍ତ୍ରୀ ଲୋକମାନେ ବେଳ ବୁଡ଼ିଆ କାମରେ ବ୍ୟସ୍ତ ଥାନ୍ତି । ଜଣେ ଅଧେ କାମସାରି ଗାଁକୁ ଫେରୁଥାନ୍ତି । କମଳା ଗୁହାଳ ଘରେ ଗାଈ ବାନ୍ଧୁଥିବା ସମୟରେ ହଠାତ୍ ଅନୁଭବ କଲା, ତାକୁ ଜଣେ କିଏ ପଛପଟରୁ ଅଶ୍ଳୀଳ ଭାବରେ ଧରି ନେଇଛି । ଧରିଥିବା ଲୋକକୁ ଛାଡି ଦେଇ ସେ ଗୁହାଳ ଘରରୁ ନିଜ ଶୋଇବା ଘରକୁ ପ୍ରାଣ ବିକଳରେ ଦଉଡ଼ି ଆସିଲା । ମାତ୍ର ଅପରାଧୀ ତା' ପଛେ ପଛେ ମଧ୍ୟ ତା' ଶୋଇବା ଘର ମଧ୍ୟକୁ ପଶିଗଲା । ସମାଜ, ଶିଷ୍ଟାଚାର, ପଡ଼ୋଶୀ, ବନ୍ଧୁ ବାନ୍ଧବ ସବୁ ଭୁଲିଗଲା । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ କମଳା କିଛି ଚିନ୍ତା କରିବା ପୂର୍ବରୁ ଅପରାଧ କପିଳା ତାକୁ ତଳେ ପକାଇ ଦେଇ ପାଶବିକ ଅତ୍ୟାଚାର ଆରମ୍ଭ କରିଦେଲା । ସେ ପାଟି କରି ଆତ୍ମରକ୍ଷା ପାଇଁ ଚେଷ୍ଟା କଲା । ମାତ୍ର ତା'ର ସମସ୍ତ ଶକ୍ତି ଅତ୍ୟାଚାରୀର ଶକ୍ତି ପାଖେ ପରାସ୍ତ ହେଲା । ଅତ୍ୟାଚାରୀ କପିଳା ତା' ମୁହଁରେ ଲୁଗା ଦେଇ ତା' କାମ ଉଦ୍ଦୀପନାର ଅବସାନ କରି ଚାଲିଗଲା । ସେ ଘରୁ ବାହାରି ଗଲାବେଳେ ସେଇ ଗାଁର ଧୋବଣୀ ଦେଈ, ପଦ୍ମିଲ କାଣ୍ଡି ଦେଖି-ଥିଲେ ।

ଅପରାଧୀ ଚାଲି ଗଲା ପରେ, "କମଳା" ତା' ଶୋଇଲା ଘର ଘରରୁ ବାହାରିଲା । ଗାଁର ସମସ୍ତଙ୍କ ଆଗେ ତା'ର ସମସ୍ତ ଦୁଃଖ କହିଲା । ଧୋବଣୀ ଦେଈ ଆଗେ ତା'ର ସମସ୍ତ ଦୁଃଖ କାହାଣୀ କହିଲା । ସେତେବେଳକୁ ତାଙ୍କର ସ୍ୱାମୀ ବାବୁଲା କମ୍ପା ଶ୍ୱଶୁର କି ଶାଶୂ କେହି ଫେରି ନଥାନ୍ତି । ସେମାନେ ଫେରିଲା ପରେ କମଳା ତାଙ୍କ ଆଗେ ଏଇ ଅଘଟଣ ଘଟଣାଟି ବର୍ଣ୍ଣନା କଲା । କେହି ଆଶା କରି-

ନଥିଲେ "କପିଳା" ତାଙ୍କ ଘରର ଜ୍ୱାଇଁ ଏପରି କଦର୍ଯ୍ୟ କାର୍ଯ୍ୟ କରିବ । କଥାଟିକୁ ଗ୍ରାମ ପଞ୍ଚାୟତରେ ପକାଇ ଭୁଟେଇ ଦେବା ପାଇଁ ଚେଷ୍ଟା କରାଗଲା । ଏପରି ଅତ୍ୟାଚାର କଥା, ସାଧାରଣରେ ବାହାରକୁ ଦେବାକୁ ଲୋକମାନେ ଚାହାଁନ୍ତିନି । ଗାଁର ଇଜତ ଗାଁ ଭିତରେ ରଖିବାକୁ ଚେଷ୍ଟା କରାଯାଏ । କମଳାର ଶାଶୁ, ଶ୍ୱଶୁର, ସ୍ୱାମୀ ଗାଁ ପଞ୍ଚାୟତରେ ଫେରାଦ୍ ହେଲେ ।

କମଳାର ଶ୍ୱଶୁର ଗାଁ ପଞ୍ଚାୟତରେ ଘଟଣାର ବିସ୍ତୃତ ବିବରଣୀ ଦେଲା । ପଞ୍ଚାୟତର ମୁଖିଆମାନେ କଥାଟିକୁ ବୁଝିବାକୁ ଚେଷ୍ଟା କଲେ । ମାତ୍ର ଅପରାଧୀ ପଞ୍ଚାୟତ କଥାକୁ ମାନିବାକୁ ପ୍ରସ୍ତୁତ ନଥିଲା । ଶେଷରେ 'କମଳା" ଘଟଣାର ଆଠ ଦିନ ପରେ, ୯ । ୧ । ୮୭ ମସିହାରେ ସକାଳେ କୋଣାର୍କ ଥାନାରେ ତା' ଉପରେ ହୋଇଥିବା ପାଶବିକ ଅତ୍ୟାଚାର ଦାବୀ ରଖି କପିଳ ଜାଣ୍ଡି ନାମରେ ପ୍ରାଥମିକ ରିପୋର୍ଟ ଦେଲା । କୋଣାର୍କ ପୁଲିସ୍ ଅଫିସର ଶ୍ରୀଚନ୍ଦନ, କମଳା ରିପୋର୍ଟ ଉପରେ କୋଣାର୍କ ଥାନାରେ ଇଣ୍ଡିଆନ୍ ପେନାଲ୍ କୋର୍ଡ଼ର ୩୭୬/୩୫୧ ଦଫାରେ କେସ୍ ରୁଜୁ କରି ଅନୁସନ୍ଧାନ କାର୍ଯ୍ୟ କଲା-ବେଳକୁ ଯଥେଷ୍ଟ ଡେରି ହୋଇଯାଇଥିଲା । ଘଟଣା ସମ୍ବନ୍ଧରେ ସମ୍ପୃକ୍ତ "ଭୌତିକ" ସାକ୍ଷ୍ୟ ଅନୁସନ୍ଧାନକାରୀ ପୁଲିସ୍ ଅଫିସର କିଛି ପାଇ ପାରି ନଥିଲେ । ରିପୋର୍ଟ କରିବାର ଆଠଦିନ ଡେରି ମଧ୍ୟରେ କମଳାର ତା'ର ପିନ୍ଧିଥିବା ଲୁଗା ଶାୟା ଇତ୍ୟାଦିକୁ ସଫା କରି ଦେଇଥାଏ ।

ଧର୍ଷଣ ଅପରାଧରେ ଧର୍ଷିତାର ପିନ୍ଧିଥିବା ବସ୍ତ୍ର, ତଦନ୍ତକାରୀ ଅଫିସର ପାଇଁ ମୂଲ୍ୟବାନ । କାରଣ ଏଇ ପିନ୍ଧିଥିବା ବସ୍ତ୍ର ଦେହରେ ହିଁ ଅପରାଧୀ ବହୁ ଭୌତିକ ପ୍ରମାଣ ଛାଡ଼ି ଦେଇଯାଇଥାଏ । ସେହିପରି ଧର୍ଷଣ ଘଟିଥିବା ସ୍ଥାନ (କ୍ରାଇମ୍ ସ୍ପଟ୍) ମଧ୍ୟ ବହୁ ପ୍ରମାଣ ତଦନ୍ତକାରୀ ଅଫିସରକୁ ଯୋଗାଇ ଦେଇଥାଏ ।

ଯେଉଁ ସ୍ଥାନରେ ଧର୍ଷଣ ପରି ଅପରାଧ ଘଟେ, ସେ ସ୍ଥାନକୁ

ସାଶୀକ୍ଷଣ କରିବା କର୍ତ୍ତବ୍ୟ । ସେହିପରି ଧର୍ଷିତା ଏବଂ ଅପରାଧୀଙ୍କୁ ଶୀଘ୍ର ଡାକ୍ତରଙ୍କ ଦ୍ୱାରା ପରୀକ୍ଷା କରିବା ମଧ୍ୟ ତଦନ୍ତକାରୀ ଅଫିସର ଦାୟିତ୍ୱ । ଏସବୁ ସତ୍ତ୍ୱେ ବି ତଦନ୍ତକାରୀ ଅଫିସର ଧର୍ଷିତା କମଳା ଏବଂ ଅନ୍ୟାନ୍ୟ ସାକ୍ଷୀମାନଙ୍କର ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି କପିଳ କାଣ୍ଡି ନାମରେ କେଶ୍ ଚାର୍ଜସିଟ୍ କରି କୋର୍ଟକୁ ପଠାଇଲେ ଏବଂ କପିଳ କାଣ୍ଡିକୁ ଆରେଷ୍ଟ କରି କୋର୍ଟରେ ହାଜର କଲେ ।

ଅପରାଧଟି ଧର୍ଷଣ ଅପରାଧ ହୋଇଥିବା ଯୋଗୁ ପୁରୀର ଆସିଷ୍ଟାଣ୍ଟ ସେସନ୍ ଜଜ୍‌ଙ୍କ କୋର୍ଟରେ ଏହାର ବିଚାର ଆରମ୍ଭ ହେଲା । ଅପରାଧୀ କପିଳ, ସେ ନିର୍ଦ୍ଦୋଷ ବୋଲି କୋର୍ଟ ଆଗରେ ବୟାନ କରି କହିଥିଲା ଯେ, କମଳା ଘର ଏବଂ ତା ଶ୍ୱଶୁର ଘର ସହିତ ଆଗରୁ ମନ-ମାଳିନ୍ୟ ଥିବା ଯୋଗୁଁ "କମଳା" ତାକୁ ମିଛରେ ଏହି ଧର୍ଷଣ ଅପରାଧରେ ସମ୍ପୃକ୍ତ କରାଇଛି ।

ସମସ୍ତ ସାକ୍ଷ୍ୟ ପ୍ରମାଣ ଗ୍ରହଣ କଲାପରେ ସମ୍ମାନନୀୟ କୋର୍ଟ କପିଳାର ବକ୍ତବ୍ୟକୁ ବିଶ୍ୱାସ କରି ନଥିଲେ ଏବଂ କପିଳାକୁ ଧର୍ଷଣ ଅପରାଧରେ ସାତବର୍ଷ ଏବଂ ଘରେ ଅପରାଧ ଘଟାଇବା ପାଇଁ ପ୍ରବେଶ କରିବା ଅପରାଧ ପାଇଁ ୩ ବର୍ଷ, ଏପରି ୧୦ ବର୍ଷ କାରାଦଣ୍ଡରେ ଦଣ୍ଡିତ କଲେ । ମହାମାନ୍ୟ ସୁପ୍ରିମ୍ କୋର୍ଟର ଡିସିସନ୍ ଅନୁଯାୟୀ ଧର୍ଷଣ ମାମଲାରେ ଧର୍ଷିତାର ବକ୍ତବ୍ୟ ହିଁ ଅପରାଧୀକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ଯଥେଷ୍ଟ ପ୍ରମାଣ ।



## ସୁକାନ୍ତ ମର୍ଡ଼ର

ଗୁଡ଼ୁମ୍...ବମ୍ ଫୁଟିବା ଶବ୍ଦର ପ୍ରତିଧ୍ୱନି ନିକଟସ୍ଥ ପାହାଡ଼ ପାଖରେ ଶେଷ ହୋଇଯିବା ପୂର୍ବରୁ ବିଜୁଳି ଆଲୁଅ ଲିଭି ଯାଇଥିଲା । ଅନ୍ଧକାର ମଧ୍ୟରେ ପୁଣି ସେଇ ବୋମା ଫୁଟିବାର ଶବ୍ଦ । ଆର୍ତ୍ତଚିତ୍କାର ! ଶିଶୁ ଆଉ ମହିଳାମାନଙ୍କର କରୁଣ କ୍ରନ୍ଦନ ମଝିରେ ଶୁଣାଯାଉଥାଏ "ଧର...ଧର...ଧର...ଜୀବନରେ ମାରିଦିଅ...ବଦମାସଙ୍କୁ ଶେଷ୍ କରିଦିଅ ସବୁଦିନ ପାଇଁ" । ଠେଙ୍ଗା, ଲାଠି, ଫାର୍ଶା, ତରୁଆଲ ଗୁଳିମାର ଚାଲେ । ଅଳ୍ପ ସମୟ ପରେ ବିଜୁଳି ଆଲୁଅ ପୁଣି ଜଳି ଉଠିଲା । ସେଇ ଆଲୁଅରେ ଦେଖାଗଲା ହରିପୁର ଗାଁ ମୁଣ୍ଡ ମେଲଣ ପଡ଼ିଆର ପୂର୍ବପଟେ ଗ୍ରାମସେବକ ଅଫିସ ପିଣ୍ଡାରେ ସୁକାନ୍ତ ଜଗଦେବର ରକ୍ତାକ୍ତ ମୃତ ଦେହ କାନ୍ଥକୁ ଆଉଜି ପଡ଼ି ରହିଛି ।

ସୁକାନ୍ତ ଜଗଦେବ ପୁରୀ ଜିଲ୍ଲାର ଟାଙ୍ଗୀ, ଖୋର୍ଦ୍ଧା, ଭୁବନେଶ୍ୱର, ବାଣପୁର ଅଞ୍ଚଳରେ ଜଣେ ନାମଜାଦା ଅପରାଧୀ ଭାବେ ଜଣାଥିଲା । ବୟସ ୨୬ ବର୍ଷ । ପାଞ୍ଚଫୁଟ୍ ଆଠଇଞ୍ଚ୍ ଉଚ୍ଚତା । ସୁନ୍ଦର ସ୍ୱାସ୍ଥ୍ୟ । ସୁକାନ୍ତ ନୟାଗଡ଼ରପୁର କଲେଜରେ କିଛି ବର୍ଷ ଅଧ୍ୟୟନ କରିଥିଲା । କଲେଜ ଛାଡ଼ିଲା ପରେ ପରେ ସେ ବିଭିନ୍ନ ଅପରାଧରେ ଲିପ୍ତ ହୋଇ

ଏକ ଦୁର୍ଦ୍ଦାନ୍ତ ଅପରାଧୀ ଭାବେ ଦେଖାଦେଲା । ଯେ କୌଣସି ଅପରାଧ କରିବାରେ ସୁକାନ୍ତ ଥିଲା ସିଦ୍ଧହସ୍ତ । ରାସ୍ତା ଉପରେ ଥୁଆ ହୋଇଥିବା କାପଡ଼ର ଗୁଡ଼ିକା ଖୋଲି ନବାଠାରୁ ଆରମ୍ଭ କରି ବଡ଼ ବଜାର ଉପରୁ ମଟରସାଇକେଲ, ସ୍କୁଟର ଉଠାଇନବା ତା ପାଖେ କିଛି କଷ୍ଟକର ବ୍ୟାପାର ନଥିଲା । ସବୁ ପ୍ରକାର ଅପରାଧରେ ଜଡ଼ିତ ଥିଲା ସୁକାନ୍ତ । ତା' ନାଁ ଶୁଣିଲେ ସେ ଅଞ୍ଚଳରେ ଲୋକ ଭୟରେ ଥରି ଉଠୁଥିଲେ । ପୁଲିସ୍ ଆଖିରେ ଧୂଳି ଦେଇ କେତେଥର ସୁକାନ୍ତ ଅପରାଧ ଘଟାଇ ଫେରାର ହୋଇଯାଇଥିଲେ ମଧ୍ୟ ବହୁବାର ପୁଲିସ୍ ହାତରେ ଧରାହୋଇ କୋର୍ଟକୁ ଚାଲାଣ ହୋଇଥିଲା ।

୨୪ । ୪ । ୧୯୮୩ ମସିହା ମଧ୍ୟରାତ୍ରି । ସେଦିନ ହରିପୁର ଗାଁର ମେଳଣ ପଡ଼ିଆରେ ମେଳଣ ହେଉଥାଏ । ଆଖପାଖ ଗାଁରୁ ସଜେଇଥିବା ବିମାନରେ ଠାକୁର ଆସି ଆମ୍ବ, ପଣସ ବୃକ୍ଷ ଘେରା ମେଳଣ ପଡ଼ିଆରେ ଜମିଥାନ୍ତି । ମେଳଣପଡ଼ିଆ ମୁଣ୍ଡରେ ବିରାଟ ବରଗଛ । ବରଗଛ ପାଖକୁ ଲାଗି ହରିପୁର ମାଇନର ସ୍କୁଲ ଆଉ ସ୍କୁଲକୁ ଲାଗି ଗ୍ରାମସେବକ ଅଫିସ ଘର । ମେଳଣ ଦେଖିବା ପାଇଁ ଶହଶହ ସ୍ତ୍ରୀ, ପୁରୁଷ, ପିଲା ଜମିଯାନ୍ତି ମେଳଣ ପଡ଼ିଆରେ । ପ୍ରତ୍ୟେକ ବର୍ଷ ପରି ସେବର୍ଷ ମଧ୍ୟ ମେଳଣ ପାଇଁ ଯାତ୍ରାପାର୍ଟି ଆସିଥାନ୍ତି ଆଉ ସବୁଠାରୁ ଆକର୍ଷଣୀୟ ନାଟକ "ମୁଁ ଡକାୟତ ହେଲି କାହିଁକି" ସେଦିନ ଅଭିନୟ ହେଉଥାଏ । ଯାତ୍ରା ପେଣ୍ଡାଲ ଚାରିପଟେ ପିଲା, ମାଇପେ ଘେରି ବସିଥାନ୍ତି । ପେଣ୍ଡାଲ ଠାରୁ ଅଳ୍ପ ଦୂରରେ ନାନା ରଙ୍ଗର ମନୋହର ଦୋକାନ ପାଖକୁ ଲାଗି ଫେରିବାଲାଙ୍କ ରଙ୍ଗବେରଙ୍ଗର ପସରା । ଅନ୍ୟପଟେ ବରା, ପିଆଜି ଦୋକାନ । ବେଲୁନ, ପେଙ୍କାଳୀ ବଇଁଶୀବାଲାଙ୍କ ଶିଶୁ ମନଲୋଭା ଡାକରା । ସୁକାନ୍ତ ଜଗଦେବ ଘର ବଡ଼ପୋଖରିଆ ଗାଁରେ । ହରିପୁର— ବଡ଼ପୋଖରିଆ ଗାଁ । ପାଖାପାଖି ପଡ଼ୋଶୀ ଗାଁର ଯୁବକ ସୁକାନ୍ତ, ତାଙ୍କ ଗାଁର ଗୋଟିଏ ଝିଅକୁ ବିବାହ ହେବ ବୋଲି ମନସ୍ଥ କରି ତା' ଘରକୁ ଯିବା ଆସିବା କରୁଥାଏ । ଝିଅର ବାପ-ମା' ଗରିବ ହୋଇଥିବା ଯୋଗୁଁ

ସେମାନେ ଝିଅଟିକୁ ଅନ୍ୟ କୌଣସି ସ୍ଥାନରେ ବାହା ଦେବାପାଇଁ ସକ୍ଷମ ହୋଇ ପାରିନଥିଲେ । ସେଇ ସୁଯୋଗ ନେଇ ସୁକାନ୍ତ ତାଙ୍କ ଘରକୁ ଯିବାଆସିବା କରିବା ସଙ୍ଗେ ସଙ୍ଗେ ସତର ବର୍ଷର ଝିଅକୁ ବାହା ହବା-ପାଇଁ ସ୍ଥିର କରି ନେଇଥିଲା । ମାତ୍ର ତା' ମନକଥା ମନରେ ଥିଲା-ବେଳେ, ସି.ଆର୍.ପି.ରେ କାମ କରୁଥିବା ଜଣେ ବିବାହିତ ସିପାହୀଙ୍କ ଆଖି ସେଇ ସତର ବୟସୀ ଝିଅଟି ଉପରେ ପଡ଼ିଥିଲା । ଯଦିଓ ସିପାହୀ-ଜଣଙ୍କ ଆଗରୁ ବିବାହ କରିଥିଲେ,ମାତ୍ର ତାଙ୍କର ପ୍ରଥମ ସ୍ତ୍ରୀଙ୍କର କୌଣସି ସନ୍ତାନ ନ ନଥିବା ଯୋଗୁ ସେ ଦ୍ୱିତୀୟଥର ଏଇ ଝିଅଟିକୁ ବିବାହ କରିବା ପାଇଁ ମନସ୍ଥ କରି ସମସ୍ତ ଯୋଗାଡ଼ କରିବାରେ ଲାଗିପଡ଼ିଲେ । ଏଇ ସିପାହୀଙ୍କ ଘର ହରିପୁର ଗାଁରେ ।

ମନେ ମନେ ତ ଠିକ୍ କରିଦେଲେ ସବୁ ଠିକ୍ ହୋଇଯାଏନା । ଯେଉଁ ଝିଅକୁ "ସୁକାନ୍ତ" ଭଲ ପାଉଛି, ସେ ଝିଅକୁ ତା' ପାଖରୁ ଛଡ଼େଇ ଆଣିବା ସହଜ କଥା ନଥିଲା । କାହାର ସାହସ ଅଛି ଯମ ସଙ୍ଗେ ଖେଳ ଖେଳିବା ପାଇଁ । ମାତ୍ର ସିପାହୀ ଜଣଙ୍କ ନିରୁତ୍ସାହ ହୋଇ ନଥିଲେ । ସେ ମନେ ମନେ ଚିନ୍ତାକଲେ ଏବଂ କଣ୍ଟାକୁ କଣ୍ଟାରେ କାଢ଼ିଲା ଭଳି ଦୁର୍ଦ୍ଦାନ୍ତ ସୁକାନ୍ତକୁ ଜବତ କଲାଭଳି ଆଉ ଜଣେ ଦୁର୍ଦ୍ଦାନ୍ତ ଅପରାଧୀ ଦନୁ ରାଉତରାୟଙ୍କର ସାହାଯ୍ୟ ନେଇଲେ । ଦନୁର ସୁକାନ୍ତ ସହିତ ଆଗରୁ ପଡ଼ୁନଥିଲା । ସିପାହୀ ଜଣକ ଏଇ ସୁଯୋଗ ନେଇ ଦନୁ ଦଳର ସାହାଯ୍ୟରେ ଝିଅଟିକୁ ତାଙ୍କ ଗାଁରୁ ନେଇଯାଇ ମନ୍ଦିରରେ ବିବାହ କଲେ ।

ବିବାହ ଖବର ଶୁଣିଲା ପରେ ସୁକାନ୍ତ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଉଠିଥିଲା । ମାତ୍ର ହରିପୁର ଗାଁ ଭିତରେ ପଶି ଝିଅକୁ ଜବରଦସ୍ତ ନେଇ ଆସିବାର ସାହସ ତାର ନଥିଲା; କାରଣ ତାର ବିପକ୍ଷରେ ଥିଲେ ଦୁର୍ଦ୍ଦାନ୍ତ ଦନୁର ଦଳ । ସେଥିଲାଗି ସେ ସୁଯୋଗ ଖୋଜୁଥିଲା । ହରିପୁର ମେଳଣ ଦିନ ସୁକାନ୍ତ ଖବର ପାଇଲା ଯେ, ସେଇ ତାଙ୍କ ଗାଁର ଝିଅ

ମେଳଣ ଦେଖିବାକୁ ଆସିଛି । ଏ ଖବର ପାଇଲା ପରେ, ସେ ମଧ୍ୟ ତା ଦଳର ଲୋକ ପଠାଇ ପ୍ରକୃତରେ ସେ ଝିଅ ମେଳଣ ପଡ଼ିଆରେ ଅଛି କି ନାହିଁ ବୁଝିନେଲା । ସମସ୍ତ ଖବର ସଂଗ୍ରହ କଲାପରେ ସୁକାନ୍ତ ହ୍ୟାଣ୍ଡ୍ ବମ୍ ଇତ୍ୟାଦି ମାରଣାସ୍ତ୍ରରେ ପ୍ରସ୍ତୁତ ହୋଇ ପ୍ରାୟ ରାତି ଘ ୧୨-୩୦ ମିନିଟ୍ ସମୟରେ ମେଳଣ ପଡ଼ିଆ ମଧ୍ୟକୁ ପ୍ରବେଶ କରିଥିଲା । ବରଗଛର ଛାଇ ଅନ୍ଧାର ଭିତରେ ଠିଆ ହୋଇ ସେ ଲକ୍ଷ୍ୟ କରିନେଲା ଝିଅଟି ବସିଥିବା ସ୍ଥାନଟିକୁ । ଝିଅ ପାଖରେ ହରିପୁର ଗାଁର ଛୁଆ ମାଇପେ ବସିଥାନ୍ତି । ମନେ ମନେ ଠିକ୍ କରିନେଲା ବିଜୁଳି ବତି କାଟି ଅନ୍ଧାର କରିଦେବ ମେଳଣ ପଡ଼ିଆକୁ । ସେଇ ଅନ୍ଧାର ମଧ୍ୟରେ ବୋମା ଫୁଟାଇ ଦେଖଣାହାରୀଙ୍କୁ ଭୀତତ୍ରସ୍ତ କରାଇ, ସେ ତାର ମନ କାମନା ପୂର୍ଣ୍ଣ କରିବ । ସେଇ ଉଦ୍ଦେଶ୍ୟ ରଖି ସୁକାନ୍ତ ବିଜୁଳିବତିର ଲାଇନ ଉଡ଼ାଇ ଦେବା ସଙ୍ଗେ ସଙ୍ଗେ ବୋମା ଫୁଟାଇ ଦେବା ଆରମ୍ଭ କରିଥିଲା । ବୋମା ଫୁଟିବା ସଙ୍ଗେ ସଙ୍ଗେ ମେଳଣ-ପଡ଼ିଆ ଧୂଆଁରେ ପୂରିଗଲା । ସମସ୍ତ ସ୍ତ୍ରୀଲୋକମାନେ ବସିଥିବା ଅଞ୍ଚଳ ମଧ୍ୟକୁ ପ୍ରବେଶ କଲାବେଳେ ମଞ୍ଚ ପାଖରେ ଥିବା ଗୋଟେ ଗ୍ରେଟ ଗାତ ଭିତରେ ପଡ଼ିଗଲା ସୁକାନ୍ତ । ସେଇ ସମୟରେ ହରିପୁରର ଲୋକମାନେ ସୁକାନ୍ତକୁ ଦେଖିନେଲେ ଏବଂ ସେ ଗର୍ତ୍ତ ମଧ୍ୟରେ ପଡ଼ିଥିବା ସମୟରେ ତାକୁ ଧରିନେଲେ । ସୁକାନ୍ତ ସେଇ ଅନ୍ଧାର ମଧ୍ୟରେ ତାଙ୍କ କବଳରୁ ଖସିଯାଇ ଗୋଟେ କାଚ ଦୋକାନୀର ଦୋକାନ ବାଟେ ଦେଇ ଦଉଡ଼ି ପଳାଇଲା ସମୟରେ ସେମାନେ ତା' ପଛେ ପଛେ ଗୋଡ଼ାଇ ତାକୁ ଧରିନେଲେ ଏବଂ ବିଭିନ୍ନ ମାରଣାସ୍ତ୍ରରେ ମାରିବାକୁ ଲାଗିଲେ । ସୁକାନ୍ତର ସମସ୍ତ ଚେଷ୍ଟା ସେମାନଙ୍କ କବଳରୁ ମୁକ୍ତ ପାଇବା ପାଇଁ ବିଫଳ ହେଲା ଏବଂ ସୁକାନ୍ତର ମୃତ ଦେହକୁ ଆକ୍ରମଣକାରୀମାନେ ମେଳଣ ପଡ଼ିଆର ପୂର୍ବଦିଗ ଗ୍ରାମସେବକଙ୍କ ଅଫିସ ପାଖରେ ଛାଡ଼ିଦେଇ ଚାଲିଗଲେ । ଅଳ୍ପ ସମୟ ମଧ୍ୟରେ ମେଳଣପଡ଼ିଆ ଶ୍ମଶାନ ଭୂମିରେ ପରିଣତ ହୋଇଗଲା । ଭୟରେ ଦୋକାନୀମାନେ ଦୋକାନ ଭାଙ୍ଗି ଯେ ଯାହା ଘରକୁ ଚାଲିଗଲେ ।

ଯାହାପାଖିରି ଲୋକମାନେ ବେଶପୋଷାକ ପିନ୍ଧି ମୁହଁର ରଙ୍ଗ ନ ଛଡ଼ାଇ ଯେ ଯୁଆଡ଼େ ପାରିଲେ ପ୍ରାଣ ନେଇ ପଳାଇବାକୁ ଲାଗିଲେ ।

୨୪ । ୪ । ୮୩ ତାରିଖ ସକାଳ ୯ଟାବେଳେ ସୁକାନ୍ତ ଜଗଦେବଙ୍କ ଭାଇ ପ୍ରଫୁଲ୍ଲ ଜଗଦେବ ଟାଙ୍ଗି ଥାନାରେ ଜଗା ଦାସ, ଭ୍ରମର ପ୍ରଧାନ, ଦନୁ ହରିଧନ ପ୍ରଭୃତିଙ୍କ ନାଁରେ ଲିଖିତ ଏତଲା ଦେଲା । ତାଙ୍କ ଠାରୁ ପ୍ରାଥମିକ ରିପୋର୍ଟ ନେଲାପରେ ଟାଙ୍ଗି ଥାନାର ଭାରପ୍ରାପ୍ତ ଅଫିସର ଭାରତୀୟ ଦଣ୍ଡବିଧି ଆଇନର ୧୪୭, ୧୪୮, ୩୨୩, ୩୦୨ ଏବଂ ୧୪୯ ଦଫାରେ ମକଦ୍ଦମା ରୁଜୁ କରି ତଦନ୍ତ ଆରମ୍ଭ କଲେ । ଏହି ତଦନ୍ତକୁ ସେତେବେଳର ଖୋର୍ଦ୍ଧା ଏସ୍. ଡ. ପି. ଓ. ଶ୍ରୀ ଦାସ ତଦାରଖ କରିଥିଲେ । ତଦନ୍ତ ସମୟରେ ତଦନ୍ତକାରୀ ଅଫିସର ମୃତ ସୁକାନ୍ତ ଦେହରେ ବହୁ ମାରାତ୍ମକ ଅସ୍ତ୍ରାଘାତର କ୍ଷତ ଦେଖିଥିଲେ ଏବଂ ମୃତ ଦେହକୁ ଡାକ୍ତରୀ ପରୀକ୍ଷା ପାଇଁ ଡାକ୍ତରଙ୍କ ନିକଟକୁ ପଠାଇଥିଲେ । ଡାକ୍ତର ତାଙ୍କ ପୋଷ୍ଟମର୍ଟମ୍ ରିପୋର୍ଟରେ ମଧ୍ୟ ଏ ସମସ୍ତ କ୍ଷତ ବିଷୟରେ ବିଶଦ୍‌ଭାବେ ବର୍ଣ୍ଣନା କରି ଲେଖିଥିଲେ ଏବଂ ମୃତ ସୁକାନ୍ତର ମୃତ୍ୟୁ ସିଭିୟର ହାମୋରେଜ୍ ଏବଂ ସକ୍ ଯୋଗୁ ଘଟିଛି ବୋଲି ମତାମତ ଦେଇଥିଲେ । ତଦନ୍ତ ସରିଲା ପରେ ତଦନ୍ତକାରୀ ଅଫିସର ଏଗାରଜଣ ଅପରାଧୀଙ୍କ ବିରୁଦ୍ଧରେ ଅଭିଯୋଗପତ୍ର କୋର୍ଟକୁ ପଠାଇଥିଲେ ।

ସୁକାନ୍ତ ହତ୍ୟା ମକଦ୍ଦମା ମାନ୍ୟବର ଭୁବନେଶ୍ୱରର ଆଡ଼ିସନାଲ ସେସନସ ଜଜ୍‌ଙ୍କ କୋର୍ଟରେ ବିଚାର ହୋଇଥିଲା । ବିଚାରବେଳେ ଅପରାଧୀମାନେ ସେମାନେ ଏ ଅପରାଧ ଘଟାଇ ନାହାନ୍ତି ବୋଲି କହିଥିଲେ । ସେମାନେ ସେ ସ୍ଥାନରେ ନଥିଲେ ବୋଲି କହିଥିଲେ ।

ମାନ୍ୟବର ବିଚାରପତି, ପ୍ରତ୍ୟେକ ସାକ୍ଷୀ ଏବଂ ହତ୍ୟାମକଦ୍ଦମାରେ ସମ୍ପୃକ୍ତ ଥିବା ଭୌତିକ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି ସାରିଲା ପରେ

ଅପରାଧୀ ଜଗନ୍ନାଥ, ନାରାୟଣ, ଦନୁ ଏବଂ ଭ୍ରମର ପ୍ରଧାନଙ୍କୁ ଆଜୀବନ କାରାଦଣ୍ଡ ଭୋଗ କରିବା ପାଇଁ ଆଦେଶ ଦେଇଥିଲେ ଏବଂ ତାହା ସଙ୍ଗେ ସଙ୍ଗେ ଅନ୍ୟ ସାତଜଣ ଅପରାଧୀଙ୍କ ବିରୁଦ୍ଧରେ କୌଣସି ପ୍ରକାର ସନ୍ଦେହଯୁକ୍ତ ସାକ୍ଷ୍ୟ ପ୍ରମାଣ ନ ଥିବା ଦୃଷ୍ଟିରୁ ସେମାନଙ୍କୁ ଏହି ମକଦ୍ଦମାରୁ ଖଲାସ କରି ଦେଇଥିଲେ ।





## ବଟକୃଷ୍ଣ ତ୍ରିପାଠୀ

ପୁରୀ ଜିଲ୍ଲାର ଶ୍ରୀରାମ ପୁର (ବାଲିପାଟଣା) ଠାରେ ସାହିତ୍ୟିକ ବଟକୃଷ୍ଣ ତ୍ରିପାଠୀ ଜନ୍ମିଷ୍ଠ ହୁଅନ୍ତି, ୨୫.୧୨.୧୯୪୦ରେ । ପିତା– କାଶିନାଥ ତ୍ରିପାଠୀ । ୧୯୬୫ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍. ଏ. ପାଶ୍ କରନ୍ତି । ଏମ୍. ଏ. ଅଧ୍ୟୟନ କାଳରେ ୧୯୬୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଛାତ୍ର ୟୁନିଅନର ସାଧାରଣ ସମ୍ପାଦକ ଭାବେ ସେ ନିର୍ବାଚିତ ହୁଅନ୍ତି ।

ଶ୍ରୀଯୁକ୍ତ ତ୍ରିପାଠୀ କର୍ମମୟ ଜୀବନରେ ପ୍ରବେଶ କରନ୍ତି ୧୯୬୫ ମସିହାରେ । ପ୍ରଥମେ Junior Finance Service ରେ ସେ ଯୋଗ ଦିଅନ୍ତି ଓ ୧୯୬୬ ମସିହାରେ O.A.S.ପାଇ ୧୯୬୮ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ପ୍ରଶାସନିକ ସେବାସଂଘରେ କାର୍ଯ୍ୟ କରନ୍ତି । ୧୯୬୮ ମସିହାରେ ସେ ପ୍ରବେଶ କରନ୍ତି ପୋଲିସ୍ ସେବା ସଂଘରେ । ଜଣେ ଦକ୍ଷ I.P.S. Officerଭାବେ ସେ ଓଡ଼ିଶାର ବିଶିଷ୍ଟ ଜିଲ୍ଲା ମାନଙ୍କରେ ଏସ୍. ପି. ଓ କେନ୍ଦ୍ର ଅଧୀନରେ ତୁଇ ବର୍ଷ ଧରି (Director Vigilance, E.P.I. Ltd) କାର୍ଯ୍ୟ କରିବାପରେ ସଂପ୍ରତି କେନ୍ଦ୍ରାଞ୍ଚଳ ଡି.ଆଇ.ଜି. (ପୋଲିସ୍) ଭାବେ ଅବସ୍ଥାପିତ ।

ଶ୍ରୀଯୁକ୍ତ ତ୍ରିପାଠୀ ଜଣେ ବିଶିଷ୍ଟ ସଂସ୍କୃତି ପ୍ରେମୀ ଓ ଚଳଚ୍ଚିତ୍ର ତଥା ମଞ୍ଚ ଅଭିନେତା ମଧ୍ୟ । ନାଟକ ତଥା ଚଳଚ୍ଚିତ୍ରରେ ଅଭିନୟ କରି ସେ ଆପଣାର ପାରଦର୍ଶୀତା ଦେଖାଇଛନ୍ତି । ତାଙ୍କ ଅଭିନୀତ ଚଳଚ୍ଚିତ୍ର ଗୁଡ଼ିକ ମଧ୍ୟରୁ ଅନ୍ୟତମ ହେଉଛି ଓଡ଼ିଆରେ- 'ରାମ୍ ରହିମ୍', 'ସ୍ୱପ୍ନ ସାଗର', 'ବଧୂ ନିରୁପମା', ହିନ୍ଦୀରେ- 'ବାଗ୍ ବାହାଦୁର' ଓ ଇଂରାଜୀରେ- 'unwanted'.

ଜଣେ ଜଣାଶୁଣା ଶିଶୁସାହିତ୍ୟିକ, ରମ୍ୟ ରଚନାକାର, ଭ୍ରମଣ କାହାଣୀର ସ୍ରଷ୍ଟା ଭାବେ ମଧ୍ୟ ସେ ସୁବିଦିତ ।

ପୁରସ୍କାର ଓ ସମ୍ମାନ :—ଶ୍ରୀଯୁକ୍ତ ତ୍ରିପାଠୀ ଚଳଚ୍ଚିତ୍ର ପାଇଁ ସିନେ କ୍ରିଟିକ୍ ପୁରସ୍କାର, ନାଟକରେ ଅଭିନୟ ପାଇଁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପଦ୍ୱାରା ସମ୍ମାନିତ, ଜନ ସୁରକ୍ଷା ସମିତି ପକ୍ଷରୁ କଟକ ପ୍ରତିଭା ପୁରସ୍କାର, ସାହିତ୍ୟ ଓ କଳାରେ ଉଲ୍ଲେଖନୀୟ କାର୍ଯ୍ୟପାଇଁ ନୂଆଦିଲ୍ଲୀରୁ N.P.I ଦ୍ୱାରା "ନେସ୍‌ନାଲ୍ ପ୍ରେସ୍ ସ୍ୱର୍ଣ୍ଣଜୟନ୍ତୀ ସମ୍ମାନ" ତଥା କୃତିତ୍ୱପୂର୍ଣ୍ଣ ପୋଲିସ୍ ସେବା କାର୍ଯ୍ୟ ପାଇଁ "ରାଷ୍ଟ୍ରପତି ପୋଲିସ୍ ସେବା ପଦକ" ପ୍ରାପ୍ତ ହୋଇଛନ୍ତି ।

ଏହି ବହୁମୁଖୀ ପ୍ରତିଭାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛୁ । ପ୍ରକାଶକ